# ଶ୍ରୀ ଶ୍ରୀ ତାରାତାରିଣୀ

( ସଂକଟ ତାରିଣୀ ବ୍ରତ ସହ )



ଶ୍ରୀ ନିରଞ୍ଜନ ରଥ

# ଶ୍ରୀ ଶ୍ରୀ ତାରା ତାରିଣୀ

## ( ସଂକ୍ଷିପ୍ତ ତାରିଣୀବ୍ରତ ପଦ୍ଧତି )



ଲେଖକ ଶ୍ରୀ ନିରଞ୍ଜନ ରଥ

ଗ୍ରାମ : ଶ୍ରୀକରପୁର ଶାସନ

ପୋ : ଗୋବରା, ବ୍ରହ୍ମପୁର ( ଗଞ୍ଜାମ )

ଅନୁଦାନ ଚାରି ଟଙ୍କା ମାତ୍ର

---

ଶ୍ରୀ ଶ୍ରୀ ତାରାତାରିଣୀ ମନ୍ଦିରର ଟ୍ରଷ୍ଟି ବୋର୍ଡ଼ ଦ୍ୱାରା

ତା ୧୫-୨-୯୫ ରିଖର ନିର୍ଦ୍ଧାରିତ ବୈଠକରେ ଅନୁମୋଦିତ ।

# ଶ୍ରୀ ଶ୍ରୀ ତାରା ତାରିଣୀ

## ( ସଂକଟ ତାରଣୀ ବ୍ରତ ସହ )

ଲେଖକ **ଶ୍ରୀ ନିରଞ୍ଜନ ରଥ**, ଅଧ୍ୟକ୍ଷ : ସାହିତ୍ୟ ସନ୍ଧ୍ୟା
( ଜାତୀୟ ସଙ୍ଗୀତ କଳା କେନ୍ଦ୍ର, ବ୍ରହ୍ମପୁର )
ଗ୍ରାମ—ଶ୍ରୀକରପୁର ଶାସନ
ପୋଷ୍ଟ—ଗୋବର (ଧୁମୁସର) ଗଞ୍ଜାମ

ବର୍ତ୍ତମାନର ଠିକଣା : **ଶ୍ରୀ ନିରଞ୍ଜନ ରଥ**
ରାମନଗର-୮, ନିରଞ୍ଜନ କଲୋନୀ
ପୋ—ଲଞ୍ଜିପଲ୍ଲୀ, ବ୍ରହ୍ମପୁର, ଗଞ୍ଜାମ

ପ୍ରକାଶକ : **ଶ୍ରୀ ନବୀନ କୁମାର ନନ୍ଦ**, ଟିକରପଡ଼ା, ବଲାଙ୍ଗୀର

(ଏଥିରେ ତାରତାରିଣୀଙ୍କ ଉତ୍ପତ୍ତି, ସ୍ତନ ପୀଠର ମାହାତ୍ମ୍ୟ, ପୁଣ୍ୟତୋୟା, ଋଷିକୁଲ୍ୟାର ଜନ୍ମ ବୃତ୍ତାନ୍ତ, ବସୁ ପ୍ରହରାଜଙ୍କ ଜନ୍ମ ବୃତ୍ତାନ୍ତ, ପୂଜା ପଦ୍ଧତି, ପର୍ବପର୍ବାଣୀ, ପ୍ରାକୃତିକ ଦୃଶ୍ୟ ଇତ୍ୟାଦି ବିସ୍ତୃତ ଭାବେ ବର୍ଣ୍ଣିତ । )

ରାସ୍ତା ଘାଟର ସୂଚନା : ବ୍ରହ୍ମପୁର ସହର ଠାରୁ ଜଗନ୍ନାଥପୁର ଜଙ୍କ୍‌ସନ, ନରେନ୍ଦ୍ରପୁର ଟାଙ୍ଗଣାପଲ୍ଲୀ, ଭାଟକୁମରଡ଼ାଦେଇ ପୁରୁଷୋତ୍ତମପୁର ଯିବା ରାସ୍ତାରେ ପ୍ରାୟ ୩୫ କି: ମି ଠାରେ ତାରତାରିଣୀ ଜଙ୍କ୍‌ସନ ପଡ଼େ

**ରଥ ପ୍ରକାଶନୀ**

# ଅଭିମତ

ଶ୍ରୀ ନିରଞ୍ଜନ ରଥଙ୍କ ପ୍ରଣୀତ ଭକ୍ତିରସାମୃତ କ୍ଷୁଦ୍ର କାବ୍ୟ ଗୁଡ଼ିକ ମଧ୍ୟରୁ କେତେକ ପାଠ କରିବାର ସୁଯୋଗ ପାଇ ମୁଁ ବିଶେଷ ଆନନ୍ଦିତ । ଏହି ଶ୍ରୀ ଶ୍ରୀ ତାରାତାରିଣୀ ଆଧ୍ୟାତ୍ମିକ କାବ୍ୟଟି ପଢ଼ିବା ପୂର୍ବରୁ 'ତ୍ରିଲୋଚନ ଶତକ' 'ଅବୁଝା ମନ ଚଉତିଶା', 'ଅନ୍ତର ବେଦନା', 'ବୀର ହନୁମାନ ଶତକ' 'ନିଗମ ମାତ ସଂଗ୍ରହ' 'ମହାତପସ୍ୱୀ କୈକେୟୀ' 'ବୀରାଙ୍ଗନାଗଣପୂର୍ଣ ଶତକ' ଏବଂ ସ୍ତୁତି ଚନ୍ଦ୍ରିକାର କାବ୍ୟ ରଚନା ଶୈଳୀ ଅତି ଉତ୍କର୍ଷକ ତଥା ଭକ୍ତିଭାବୋଦ୍ଦୀପକ ହୋଇଅଛି । ବିଶେଷତଃ ଏହି ତାରାତାରିଣୀ କାବ୍ୟରେ କବି ଯେଉଁପରି ଭାବରେ ଭଗବତୀଙ୍କର ଆବିର୍ଭାବ ଋଷିକୁଲ୍ୟା ଜନ୍ମ ବୃତ୍ତାନ୍ତ ସ୍ତନପୀଠ ମହିମା, ତାରାତାରିଣୀ ପର୍ବତର ସ୍ଥିତି ଏବଂ ପାଶପାର୍ଶ୍ୱିକ ପ୍ରାକୃତିକ ପରିବେଶ ଇତ୍ୟାଦିର ବର୍ଣ୍ଣନା ସହ ଯେଉଁ ସତ୍ୟତା ପ୍ରତିପାଦନ ପାଇଁ ଲେଖନୀ ଚାଳନା କରିଅଛନ୍ତି, ତାହା ପ୍ରକୃତରେ ପ୍ରଶଂସନୀୟ ।

ଓଡ଼ିଶା ସାହିତ୍ୟ ଏକାଡ଼େମି ତରଫରୁ କବିଙ୍କର ସମସ୍ତ ରଚନା ଗୁଡ଼ିକର ଉପଯୁକ୍ତ ସମୀକ୍ଷା ଯଦି କରାଯାଏ, ତେବେ ସେ ନିଶ୍ଚିତ ଭାବେ ତାଙ୍କର କୃତି ପାଇଁ ପୁରସ୍କୃତ ହେବେ ବୋଲି ମୋର ବିଶ୍ୱାସ ।

ପ୍ରଣେତା ଜଣେ ରାଜସ୍ୱ ବିଭାଗର ଦାୟିତ୍ୱ ସମ୍ପନ୍ନ କର୍ମଚାରୀ ଭାବରେ ଅତି ସ୍ୱଳ୍ପ ସମୟ ଏବଂ ବିଭିନ୍ନ ଜଞ୍ଜାଳ ମଧ୍ୟରେ ଜଡ଼ିତ ରହି ସୁଦ୍ଧା ଭକ୍ତି କାବ୍ୟ ଗୁଡ଼ିକ ରଚନା କରିବା ପାଇଁ ସମର୍ଥ ହୋଇପାରି ଅଛନ୍ତି । ସେଥିପାଇଁ ଭଗବତୀ ତାଙ୍କୁ

ଦୀର୍ଘ ଜୀବନ ତଥା ଅଧିକତର କବିତ୍ୱ ପ୍ରଦାନ କରନ୍ତୁ, ଏହାହିଁ କାମନା ।

ଦୀନନାଥ ପଣ୍ଡା
ଆଇ. ଏ. ଏସ.
ଜିଲ୍ଲାପାଳ, ଗଞ୍ଜାମ, ଛତ୍ରପୁର
୨୭-୭-୯୪

# ଅଭିମତ

କବି ଶ୍ରୀ ନିରଞ୍ଜନ ରଥଙ୍କ ରଚିତ 'ଶ୍ରୀ ଶ୍ରୀ ତାରତାରିଣୀ' ପାଣ୍ଡୁଲିପି ପାଠ କରି ଅତିଶୟ ପ୍ରୀତ ହେଲି । ଏଥିରେ ପୀଠର ସୃଷ୍ଟି ଏବଂ ମାହାତ୍ମ୍ୟ ସନ୍ନିବେଶିତ । ଏହି ଶାକ୍ତ ପୀଠର ମାହାତ୍ମ୍ୟ ପ୍ରଚାର ପାଇଁ ଏହି ପୁସ୍ତିକା ଓଡ଼ିଶା ତଥା ବହିଃରାଜ୍ୟରେ ଥିବା ଓଡ଼ିଆ ବାସୀଙ୍କ କରଗତ ହେବା ବାଞ୍ଛନୀୟ । ଏତଦ୍ ବ୍ୟତୀତ, କବିଙ୍କ ରଚିତ 'ଅନ୍ତର ବେଦନା' 'ଅବୁଝା ମନ ଚଉତିଶା' 'ବୀର ହନୁମାନ ଶତକ' 'ତ୍ରିଲୋଚନ ଶତକ' ଏବଂ ଆଦର୍ଶନାରୀ ଇତ୍ୟାଦି ସରଳ ସାବଲୀଳ ଏବଂ ଭକ୍ତି ପ୍ରଚୋଦକ । ଭକ୍ତି ରସାତ୍ମକ ରଚନା ଦ୍ୱାରା ସେ ସମାଜର କଲ୍ୟାଣ ସାଧନ କରିବେ ବୋଲି ଆଶା କରେ ।

ବିଚିତ୍ରା ନନ୍ଦ ଦାସ
ଉପ ଜିଲ୍ଲାପାଳ, ଛତ୍ରପୁର (ଗଞ୍ଜାମ)
ତଥା ସଭାପତି, ତାରତାରିଣୀ
ମନ୍ଦିର ପରିଚାଳନା ଟ୍ରଷ୍ଟି ବୋର୍ଡ଼
୯-୧୦-୯୪

# ନିଜ କଥା

ଏହି ଶ୍ରୀ ଶ୍ରୀ ତାରତାରିଣୀ କ୍ଷୁଦ୍ର କାବ୍ୟ ଖଣ୍ଡିକ ରଚନା କରିବା ପାଇଁ ବିଭିନ୍ନ ପ୍ରତିବନ୍ଧକ ଅତିକ୍ରମ କରିବାକୁ ପଡ଼ିଛି । ସେ ଯାହାହେଉ ମା ତାରତାରିଣୀଙ୍କ ଅନୁକମ୍ପାରୁ ଯେନ ତେନ ପ୍ରକାରେଣ ପୁସ୍ତକଟି ଭକ୍ତଗଣଙ୍କ ସୁପାଠ୍ୟ ହୋଇପାରିବ ବୋଲି ଆଶା ଏବଂ ବିଶ୍ବାସ ।

ପୁରାଣ ବର୍ଣ୍ଣିତ ସ୍ତନପୀଠ ଗ୍ରନ୍ଥାନ୍ତରେ ବିଭିନ୍ନ ମତ ପ୍ରକାଶିତ କିନ୍ତୁ ମତ୍ ଲିଖିତ ପୁସ୍ତକରେ ଋଷିକୂଲ୍ୟା ତଟସ୍ଥିତ ତାରତାରିଣୀ ପୀଠକୁ ପୁରାଣ ବର୍ଣ୍ଣିତ ସ୍ତନପୀଠ ରୂପେ ଗ୍ରହଣ କରାଯାଇଛି କାରଣ ସ୍ବର୍ଗତ ଯୋଗୀ ରଣା, ସେବକ ଭୂଷଣ (ଶ୍ରୀ ତାରତାରିଣୀଙ୍କ ଅତି ପୁରାତନ ସେବକ) ଏହି ପୀଠକୁ ସ୍ତନ ପୀଠ ରୂପେ ବର୍ଣ୍ଣନା କରିଛନ୍ତି । ଏତଦ୍ ବ୍ୟତୀତ ଭାରତର ବିଶିଷ୍ଟ ଐତିହାସିକ ***Sri D. C. Srikar*** ଙ୍କ ଦ୍ୱାରା ରଚିତ ***"The Saktapeeths"*** ଗ୍ରନ୍ଥରେ ଏହି ପୀଠକୁ ସ୍ତନପୀଠ ବୋଲି ମଧ୍ୟ ସ୍ବୀକାର କରିଛନ୍ତି ।

ଉପରୋକ୍ତ ତଥ୍ୟ ସହିତ ବଶିଷ୍ଠ ସଂହିତାର ନିମ୍ନଲିଖିତ ଶ୍ଳୋକଟି ତାରତାରିଣୀ ପୀଠ ପୁରାଣ ବର୍ଣ୍ଣିତ ସ୍ତନ ପୀଠ ହୋଇଥିବାର ସମ୍ଭାବନାକୁ ଅଧିକ ବଳିଷ୍ଠ କରୁଛି ।

ଋଷିକୂଲ୍ୟା ତଟେ ଦେବୀ
ତାରକାଖ୍ୟ ମହାଗିରଃ
ତସ୍ୟ ଶୃଙ୍ଗେ ସ୍ଥିତା ତାରା
ବଶିଷ୍ଠ ରାଜିତା ପରା

ଈଶ୍ୱର ଚିର ରହସ୍ୟମୟ । ତଦନୁସାରେ ଓଡ଼ିଶାର ପଲ୍ଲୀପଲ୍ଲୀରେ ଥିବା ଦେବାଦେବୀଙ୍କ ଉତ୍ପତ୍ତି ମଧ୍ୟ ରହସ୍ୟ ମଧ୍ୟରେ ଆଚ୍ଛନ୍ନ । ସେ ରହସ୍ୟ ମଧ୍ୟରୁ ସେମାନଙ୍କ ଉତ୍ପତ୍ତି ଇତିହାସର ସନ୍ଧାନ କରିବାର ଚେଷ୍ଟା ଅଦ୍ୟାବଧି ଅବ୍ୟାହତ ରହିଛି । କେବେ ମଧ୍ୟ ସମ୍ପୂର୍ଣ୍ଣ ହେବାର ନୁହେଁ । ଏଭଳି ଏକ ପରଂପରାରେ ଲବ୍ଧ ପ୍ରମାଣ, ଇତିହାସ, କିମ୍ବଦନ୍ତୀକୁ ଆଧାର କରି ମୁଁ ତାରତାରିଣୀଙ୍କ ଉତ୍ପତ୍ତି ଇତିହାସ ସନ୍ଧାନ କରିବାକୁ ପ୍ରୟାସ କରିଛି ମାତ୍ର ।

— ଲେଖକ —

ଓଁ ଶ୍ରୀ ଗୁରବେ ନମଃ

ପରମାରାଧ୍ୟ ନନା ୬ ବିଶ୍ୱନାଥ ରଥ

ଓ

ବୋଉ ୬ ରାଧାଦେବୀଙ୍କ

ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ।

ଯେଉଁମାନଙ୍କ ପ୍ରୋତ୍ସାହନରେ ଏଇ ଆଧ୍ୟାତ୍ମିକ
କାବ୍ୟ ଶ୍ରୀ ଶ୍ରୀ ତାରାତାରିଣୀ

ସର୍ବଶ୍ରୀ * କାମରାଜୁ ସାହୁ

* ଶାନ୍ତନୁ କୁମାର ରଥ

* ଡ଼. ମନୋଜ କୁମାର ମହାପାତ୍ର

* ବିପିନ ମହାପାତ୍ର

* ବାଉନିଧି ପଲେଇ

* ବାବୁଲି ସାହୁ

* ତ୍ରିପୁରାରି ସାବତ

ଦେବୀ ପ୍ରସାଦ ସାହୁ

* ତ୍ରିନାଥ ନାୟକ

* ଗଦାଧର ପାଣିଗ୍ରାହୀ

* ବାସୁଦେବ ସାବତ

* ବୃକୋଦର ସାହୁ

# ଶ୍ରୀ ଶ୍ରୀ ତାରା ତାରିଣୀ

## ( ସଂକଟ ତାରିଣୀ ବ୍ରତ ସହ )

ଜୟ ମା ତାରତାରଣୀ ଓଁକାର ରୂପିଣୀ
ଜୟ ମା ତାରତାରଣୀ ଦୁର୍ଗତି ହାରିଣୀ
ଜୟ ମା ତାରତାରଣୀ ମାୟା ସ୍ୱରୂପିଣୀ
ଜୟ ମା ତାରତାରଣୀ ଦୁଃଖ ବିମୋଚନୀ । ୧ ।

ଜୟ ମା ତାରତାରଣୀ ପତିତପାବନୀ
ଜୟ ମା ତାରତାରଣୀ ସର୍ବେଜଦାୟିନୀ
ଜୟ ମା ତାରତାରଣୀ ଖର୍ପର ଧାରଣୀ
ଜୟ ମା ତାରତାରଣୀ ଦୈତ୍ୟ ବିନାଶିନୀ । ୨ ।

ଜୟ ମା ତାରତାରଣୀ ଐଶ୍ୱର୍ଯ୍ୟ ଦାୟିନୀ
ଜୟ ମା ତାରତାରଣୀ ସଂହାର କାରଣୀ
ଜୟ ମା ତାରତାରଣୀ କେଶରୀ ବାହନୀ
ଜୟ ମା ତାରତାରଣୀ ଭକତ ପାଳନୀ । ୩ ।

ଜୟ ମା ତାରତାରଣୀ କଳୁଷ ନାଶିନୀ
ଜୟ ମା ତାରତାରଣୀ ଅପ୍ରାଧ ଭଞ୍ଜିନୀ
ଜୟ ମା ତାରତାରଣୀ ଅଭୟ ଦାୟିନୀ
ଜୟ ମା ତାରତାରଣୀ ଶାନ୍ତି ପ୍ରଦାୟିନୀ । ୪ ।

ଜୟ ମା ତାରତାରଣୀ ଦେବୀ ଭଗବତୀ
ଜୟ ମା ତାରତାରଣୀ ଜୟ ସର୍ବଶକ୍ତି
ଜୟ ମା ତାରତାରଣୀ ବିମଳା ମଙ୍ଗଳା
ସକଳ ବ୍ରହ୍ମାଣ୍ଡେ ମାଗୋ ଲଗାଇଛୁ ଲୀଳା ।୫ ।

ବହୁ ରୂପ ଧରି ତୁମ୍ଭ ବିଭିନ୍ନ ପ୍ରକାରେ
ମାୟାବିନୀ ବେଶେ ବୁଲୁ ବ୍ରହ୍ମାଣ୍ଡ ମଧ୍ୟରେ
ବ୍ରହ୍ମମୟୀ ମହାଶକ୍ତି ଏ ବ୍ରହ୍ମାଣ୍ଡେ ପୂଜ୍ୟା
ସରବ ଶକ୍ତି ଆଧାର ତୁ ଅନନ୍ତ ବୀର୍ଯ୍ୟା । ୬ ।

ଆଦ୍ୟଶକ୍ତି ଆଦ୍ୟମାତା ଚଉଦ ଭୁବନେ
ମାୟାବଳେ ସର୍ବଭୂତେ ରଖିଛୁ ଗୋପନେ
ଶଙ୍ଖ, ଚକ୍ର ଗଦା ପଦ୍ମ ଧରି ତୁମ୍ଭ ହସ୍ତେ
ବିଶ୍ୱ ସଂହାରିଣୀ ଦଶ ମହା ବିଦ୍ୟା ରୂପେ । ୭ ।

ନିଶାର ଅନ୍ଧକାରେ ତୁ ପରମା ଜ୍ୟୋତି
ଆଶ୍ରିତ ଜନ ଲଭନ୍ତି ବହୁ ଯଶ କୀର୍ତ୍ତି
ତ୍ରିପୁର ମୋହିନୀ ରୂପ ଅତି ମନୋରମ
ବିମଳ ଚନ୍ଦ୍ର ବଦନେ ତିନୋଟି ନୟନ । ୮ ।

ଶୁଦ୍ଧ ସୁବର୍ଣ୍ଣର କାନ୍ତି ସର୍ବସୁଲକ୍ଷଣ
ଅଙ୍ଗେ ଅଙ୍ଗେ ବିରାଜଇ ନାନାଦି ଭୂଷଣ
ନୂପୁର କଙ୍କଣ କଟୀ ଦେଶରେ କିଂକିଣୀ
ଗମନେ ଶୁଭଇ ମାଗୋ ସୁମଧୁର ଧ୍ୱନି । ୯ ।

ବାଳ, ଯୁବା, ବୃଦ୍ଧା ମାଗୋ ତିନି ରୂପ ଧରୁ
ସିଂହ ବାହନରେ ବସି ବ୍ରହ୍ମାଣ୍ଡେ ବିହରୁ
ଆଦ୍ୟ ସତ୍ୟ ଯୁଗେ ମାଗୋ ସତୀ ନାମ ଧରି
ଦକ୍ଷ ଗୃହେ ଜନମିଲୁ ପରମା ସୁନ୍ଦରୀ । ୧୦ ।

ଲକ୍ଷେ ବରଷ ତପସ୍ୟା କରି ତୁମ୍ଭ ମାତା
ମହାଯୋଗୀ ମହେଶ୍ୱରେ ଲଭିଲୁ ଭରତା

ତୁମ୍ଭ ପିତା ଦକ୍ଷ ଯଜ୍ଞ କରି ଆୟୋଜନ
ଜାମାତା ଶିବଙ୍କୁ କଲେ ନାହିଁ ଆମନ୍ତ୍ରଣ । ୧୧ ।

ନାରଦଙ୍କ ଠାରୁ ତୁମ୍ଭେ ଶୁଣି ଏହି ବାଣୀ
ଯଜ୍ଞ ସ୍ଥଳେ ପହଞ୍ଚିଲ ଯାଇ ସେହି କ୍ଷଣି
ଜାମାତା ପୁତ୍ରୀଙ୍କ ବିନା ଯଜ୍ଞରେ ବାରଣ
କରିବାରୁ ଦକ୍ଷ କଲେ ବହୁ ଅପମାନ । ୧୨ ।

କହିଲେ ଭିକ୍ଷୁକ ଶିବ ଅଟଇ ନଗଣ୍ୟ
ଦେବ ବୋଲି କେହି ତାରେ ନଗଣନ୍ତି ଜନ
ନଥାଏ ତାହାର ଅଙ୍ଗେ ବସନ ଖଣ୍ଡିଏ
ଶମଶାନ ଭସ୍ମ ଅଙ୍ଗେ ବୋଳି ହୋଇଥାଏ । ୧୩ ।

ଏହିପରି ମୂଢ଼ ଜନେ ତୋତେ ବାହାଦେଇ
ବଂଶ ଗାରିମା ମୋହର ଦେଇଛୁ ବୁଡ଼ାଇ
ଏଣୁ ଛାଡ଼ିଯାଅ ତୁମ୍ଭେ ଶୀଘ୍ର ଯଜ୍ଞସ୍ଥଳ
ନୋହିଲେ ଘଟିବ ନିଶ୍ଚେ ଘୋର ଅମଙ୍ଗଳ । ୧୪ ।

ଏହିପରି ପିତା ମୁଖୁ ପତି ନିନ୍ଦାଶୁଣି
ଆରକ୍ତ ନୟନେ ଦେବୀ ସତୀ ଠାକୁରାଣୀ
ପରଂବ୍ରହ୍ମ ନୀଳକଣ୍ଠ ଅନ୍ତର୍ଗତେ ଧ୍ୟାୟି
ଜୀବନ ତେଜିଲ ତୁମ୍ଭେ ଯାଗାନଳେ ଡେଇଁ । ୧୫ ।

ସତୀଙ୍କ ନିଧନ ବାର୍ତ୍ତା ଶୁଣି ମହେଶ୍ୱର
ପ୍ରବେଶିଲେ ଯଜ୍ଞ ସ୍ଥଳେ ହୋଇ କ୍ରୋଧଭର
ପ୍ରଚଣ୍ଡ ଆଘାତେ ଦକ୍ଷ ପ୍ରଜାପତି ଶିର
ଛିଣ୍ଡାଇ ସେ ଅଗ୍ନିକୁଣ୍ଡେ ପକାଇ ସତ୍ୱର । ୧୬ ।

ଶବ ଅର୍ଦ୍ଧଦଗ୍‌ଧ ତନୁ ସ୍କନ୍ଧେ ଦୃଢ଼େ ଧରି
ଭ୍ରମିଲେ ସାରା ଜଗତ ପାଗଳଙ୍କ ପରି
ମୃତ ଦେହରୁ ମାଂସ ଖଣ୍ଡ ଛିଣ୍ଡି ପଡ଼େ ଯହିଁ
ଦେବୀ ପୀଠ ରୂପେ ତାହା ପ୍ରସିଦ୍ଧ ଲଭଇ । ୧୭ ।

ଏକାବନ ଦେବୀ ପୀଠ ଏହି ପରକାରେ
ପ୍ରତିଷ୍ଠିତ ହୋଇଅଛି ବିଭିନ୍ନ ସ୍ଥାନରେ
ସେ ମଧ୍ୟରୁ ସ୍ଥିରପୀଠ ଅଟେ ସର୍ବଶ୍ରେଷ୍ଠ
ଶ୍ରୀକ୍ଷେତ୍ର ବିମଳା ଦେବୀ ସତ୍ୟ ନାଭିପୀଠ । ୧୮ ।

ଯୋନି ପୀଠ ମହା କାମାକ୍ଷ୍ୟା ଯେ ଆସାମ ରାଜ୍ୟରେ
ମୁଖ ପୀଠ ମହାକାଳୀ କଲିକତା ଠାରେ
ପୂର୍ଣ୍ୟ ତୋୟା ଋଷିକୂଲ୍ୟା ତଟରେ ସ୍ତନ ପୀଠ
ପୁରୁଷୋତ୍ତମପୁରକୁ ଅତି ସନ୍ନିକଟ । ୧୯ ।

ଅଟଇ ଯାହାଙ୍କ ନାମ ଶ୍ରୀ ତାରତାରଣୀ
ଦୁଃଖି, ଦୁଃଖ ହାରଣୀ ସେ ଅଭୟଦାୟିମା
ସୂର୍ଯ୍ୟ ବଂଶ ଗୁରୁ ତ୍ରିକାଳଜ୍ଞ ସେ ବଶିଷ୍ଠ
ଏହି ତାରତାରିଣୀଙ୍କୁ କଲେ ଦିନେ ଇଷ୍ଟ । ୨୦ ।

ଆପଣା ଅଭୀଷ୍ଟ ସିଦ୍ଧି ପାଇଁ ବହୁଦିନ
ଉପାସନା କରିଲେ ହେଁ ଦେଇ ମନଧ୍ୟାନ
କର୍ଣ୍ଣପାତ କଲେ ନାହିଁ ତିଳେ ଦେବୀ ହସ୍ତ
ଅଭିମାନେ ମହର୍ଷି ଯେ ହୋଇଲେ ଅଥୟ । ୨୧ ।

କହିଲେ ସମ୍ବୋଧେ ଶୁଣ ହେ ତାରତାରଣୀ
ଧ୍ୟାନେ ବସି ତୁମ୍ଭ ଅହଂକାର ଅଛି ଜାଣି

ସଖୀ ସ୍ତନୁ ଜନ୍ମିଅଛ ବୋଲି ଗର୍ବ ବହି
ଜଟେଚନ୍ଦ୍ରସ୍ୱ କୁଳ ତୁମ୍ଭେ ପାଶୋଶଛ ତହିଁ । ୧୨ ।

ସନ୍ତାପିତ ଚିତ୍ତେ ସେହି ମହର୍ଷି ପ୍ରବର
ସାକ୍ଷୀ ରଖି ତ୍ରିଭୁବନ ଦଶଦିଗପାଳ
ଅଭିମାନେ ଅଭିଶାପ ଦେଲେ ସେ ଦେବୀରେ
ଅପୂଜା ରହିଣ ଦୁଃଖି ହୁଅ ତୁମ୍ଭେ ବାରେ । ୧୩ ।

ଅଭିଶାପ ପାଇ ଦୁଃଖେ ସ୍ତ୍ରୀ ଚାରଚାରିଣୀ
ଶିବଲେ କେ ଗ୍ରୀବା ଦେଶୁଁ ପକାଇଛୁ ହାଣି
ଶାପ ମୋଚନ ନିମନ୍ତେ ବଶିଷ୍ଠଙ୍କ ପାଶେ
ପହଁଶିଲେ ମହାଘୋର ବିରସ ମାନସେ । ୧୪ ।

ଭାଷିଲେ ହେ ମହାମୁନି ଆମ୍ଭର ପ୍ରାର୍ଥନା
ବାରେ ଅନୁଗ୍ରହ କରି ଆଚରନ୍ତୁ କ୍ଷମା
ନୋହିଲେ ନୋହୁ ଆମ୍ଭର ସ୍ଥାନ ତ୍ରିଭୁବନେ
ପାଷାଣରୁ ହୀନ ହୋଇ ରହିବୁ ଜୀବନେ । ୧୫ ।

କୋମଳ ମୃଦୁ ବଚନ ଶୁଣି ଦେବୀଙ୍କର
ସିଂଚିଲା ପରି ଅଗ୍ନିରେ ସୁଶୀତଳ ନୀର
ମହର୍ଷିଙ୍କ କ୍ରୋଧ ଅଗ୍ନି ହେଲା ନିର୍ବାପିତ
ଭାଷିଲେ ଦେବୀରେ ତୁମ୍ଭେ ନହୁଅ ଦୁଃଖିତ । ୧୬ ।

ଆଜ ମୋହର ଅଭିଶାପ ନିଷ୍ଫଳ ହୋଇବ
ମଧ୍ୟ କଳିଯୁଗେ ତୁମ୍ଭେ ଶାପୁଁ ମୁକ୍ତ ହେବ
ତେତେ କାଳପାଏ ତୁମ୍ଭେ କରିବ ପ୍ରତୀକ୍ଷା
ନ କରିବ ମୁହିଁ ତୁମ୍ଭ ଭାଗ୍ୟେ ଯାହା ଲେଖା । ୧୭ ।

ମୁକନ୍ଦର ପଥ କହୁଅଛୁ ଶୁଣ ଧିରେ
ଜାହ୍ନବୀ ଅଗ୍ରଜା ପୁଣ୍ୟ ଋଷିକୁଲ୍ୟା ତୀରେ
ବସୁ ପ୍ରଦୟଜ ନାମେ ମୋ ମାନସ ସୁତ
ସାରା ଉତ୍କଳ ଖଣ୍ଡରେ ହେବ ସୁବିଖ୍ୟାତ । ୨୮ ।

ବ୍ରାହ୍ମଣ କୁଳେ ଜନମି ହେବ ବ୍ରହ୍ମଜ୍ଞାନୀ
ତା ଘରେ ଦୁହିତା ରୂପେ ହେ ତାରତାରିଣୀ
ଲାଳନ ପାଳନ ହୋଇ କଷ୍ଟ ଧନ ସୁଖେ
ଫେରିବ ତୁମ୍ଭର ପୂର୍ବ ସ୍ଥାନ ଗିରି ଶିଖେ । ୨୯ ।

ଶତ ଗୁଣେ ବିକଶିବ ମହିମା ତୁମ୍ଭର
ଭକ୍ତିରେ ପୂଜିବେ ଦେବ ମାନବ ଅସୁର
ଶାପମୁକ୍ତ ଯାଏଁ ତୁମ୍ଭେ ଜଗତଜନନୀ
ଲୋକ ମାତା, ହରିପ୍ରିୟା, ଲକ୍ଷ୍ମୀ ଠାକୁରାଣୀ । ୩୦ ।

ନୟନ ଆଶ୍ରୟ କରି କଟାଇବ ଦିନ
ରଖିଥିବ ସଦାଶିବ ଚରଣରେ ଧ୍ୟାନ
ସେହି ବସ୍ତୁ, ପାଟରାଣୀ ତ୍ରେତୟା ଯୁଗରେ
ଜନମିବେ ମିଥିଳାରେ ଜାନକୀ ରୂପରେ । ୩୧ ।

ସ୍ୱୟଂବର ନାରାୟଣ ବୈକୁଣ୍ଠାଧିପତି
ଶିବଧନୁ ଭଙ୍ଗି ବନ୍ଧୁ ହେବେ ସୀତାପତି
ମହାସତୀ ସୀତାଙ୍କର ଶୁଭାଶିଷ ବଳେ
ପ୍ରଖ୍ୟାତ ହୋଇବ ତୁମ୍ଭେ ଅବନୀ ମଣ୍ଡଳେ । ୩୨ ।

ଏଥୁଆନ ପ୍ରତିକାରେ ନାହିଁଣେ ଉପାୟ
ଶୁଭ ମୁହୂର୍ତ୍ତ ଅପେକ୍ଷା କରି ଦେବୀ ହୟ

ଏସନ ବଚନ ଶୁଣି ସେ ଭାଗଭାଗିଣୀ
ବଶିଷ୍ଠଙ୍କ ଶାପ ଫଳ ଆସିବାର ଜାଣି । ୩୩ ।

ଆଶ୍ରମୁ ନେଲେ ସେ ଯାଇ କମଳାନୟନେ
ତେତେ କାଳ ପାଏଁ ରହିଁ ବଧିର ବଧାନେ
କେତେ କାଳ ଅନ୍ତେ ପୁଣି ସତ୍ୟ ଯୁଗ ଶେଷେ
ପ୍ରବେଶିଲା ତ୍ରେତୟା ସେ ପରମ ସନ୍ତୋଷେ । ୩୪ ।

ସତ୍ୟ ହେଲା କେତେ ଦିନେ ବଶିଷ୍ଠଙ୍କ ବାଣୀ
ରାମ ରୂପେ "ବିଷ୍ଣୁ" "ସୀତା" ରୂପେ କମଳିନୀ
ଜନ୍ମ ଲଭି ପିତୃ ସତ୍ୟ ପାଳିଥିଲେ ବନେ
ସୀତା ଚୋରି କରି ଆଣି ଅଶୋକ ବଗିଚେନେ । ୩୫ ।

ରଖିବାରୁ ସେ ରାବଣ ଲଙ୍କାର ରାଜନ
ତା ନିଧନେ ଆସି ସ୍ୱୟଂ ରାମ ନାରାୟଣ
ସୁବଳ ଗିରି ଶିଖରେ କରିଥିଲେ ବାସ
ପାତାଳରୁ ଆସି ମହୀରାବଣ ରାକ୍ଷସ । ୩୬ ।

ରାମ ଲକ୍ଷ୍ମଣଙ୍କୁ ଛନ୍ଦେ ନେଇ ସୁଡଙ୍ଗରେ
ରଖି ଅଛି ବଳଦେବ କଳୀକା ଗୁମ୍ଫରେ
ଜଣାଇଲେ ଜାନକୀଙ୍କୁ ବିଭୀଷଣ ସୁତା
ବାତା ଘାତେ ରମ୍ଭା ବୃକ୍ଷ ସମ ସେହି ସୀତା । ୩୭ ।

ଭୂତଳେ ପଡ଼ିଲେ ଢଳି ଢାଳି ଲୁହଧାର
କ ଉପାୟେ ହେବେ ସ୍ୱାମୀ, ଦେବର ଉଦ୍ଧାର
ଦୁଇ ଲୁହ ଧାର ଦୁଇ ନେତ୍ର କୋଣୁ ଝରି
ଭୂତଳେ ପଡ଼ନ୍ତି ଦୁଇ ଅପୂର୍ବ ସୁନ୍ଦରୀ । ୩୮ ।

ଉଙ୍ଗହୀନ ବସନା ସେ ପୂର୍ଣ୍ଣ ଶଶୀମୁଖୀ
ସୁଖୀ ହେବ ଦରଶନେ କୋଟି ଜନ୍ତୁ ଦୁଃଖୀ
ମସ୍ତକେ ମୁକୁଟ ଶୋହେ ଗଳେ ପୁଷ୍ପହାର
କାତି, ଖଣ୍ଡା, ଖର୍ପର ଆୟୁଧ ଯାହାର । ୩୯ ।

* ଜନ୍ମ ନେଇ ତତ୍‌କ୍ଷଣେ ଆନନ୍ଦ ବହୁଳେ
ସାଷ୍ଟାଙ୍ଗେ ପ୍ରଣାମ କଲେ ଦେବୀ ପାଦତଳେ
କହିଲେ ଯା ଆଦେଶିବ ହେ ଜଗତମାତା
ପ୍ରାଣ ଯାଉ ଅବା ରହୁ ନକରି ଅନ୍ୟଥା । ୪୦

ପାଳନ କରିବୁ ଆମ୍ଭେ ଏହା ସତ୍ୟ ଗିର
ତବ ସେବାରେ ବଢ଼ିବ ମହିମା ଆମ୍ଭର
ନନ୍ଦନ ଉତା ଜାନକୀ କହନ୍ତି ଗୋପନେ
ଅବିଳମ୍ବେ ଯାଅ ଦେବୀ ପାତାଳ ଭୁବନେ । ୪୧

ପାତାଳ ଭୁବନ ରାଜା ସେ ମହୀରାବଣ
ବନ୍ଦୀଶାଳେ ରଖିଅଛି ଶ୍ରୀରାମ, ଲକ୍ଷ୍ମଣ
ସୁରକ୍ଷା କରିବ ତାଙ୍କୁ ଦେଇ ମନଧ୍ୟାନ
ଯହନ୍ତିବା ଯାଏଁ ବୀର ପବନ ନନ୍ଦନ । ୪୨ ।

ଶିରୋଧାର୍ଯ୍ୟ କରି ଦେବୀ ହସୁ ଅନ୍ତଃକରେ
ଅନ୍ତର୍ଦ୍ଧାନେ ପହଞ୍ଚିଲେ ବନ୍ଦୀଶାଳ ଦ୍ୱାରେ
ତଦନ୍ତେ ପ୍ରବେଶ ହୋଇ ବୀର ହନୁମାନ
ବଧିଲେ ସମ୍ବୋଧେ ମୂଢ଼ ସେ ମହୀରାବଣ । ୪୩ ।

---

* ସ୍ୱର୍ଗୀୟ କବି ନରସିଂହ କୃତ 'ରଘୁନାଥ କୀର୍ତ୍ତନ' ଚତୁର୍ଥଅବକାଶ (ଉତ୍ତରାର୍ଦ୍ଧ)

ଆସିଥିଲା ସଙ୍ଗେ ଯେତେ ନିଶାଚର ସୈନ୍ୟ
ତାହାଙ୍କ ନିଧନେ ଦେଖି କଲେ ଘୋର ରଣ
ଅଙ୍ଗୁଳାତ କଲେ ନବକୋଟି କାତ୍ୟାୟନୀ
ଅଷ୍ଟ କୋଟି ହେଲେ ଜାତ ଜାନୁରୁ ଯୋଗିନୀ । ୪୪ ।

ଭୂଚର, ଖେଚର ବହୁ କପାଳରୁ ଜାତ
କରି ଅବଲମ୍ବେ ସର୍ବ ସୈନ୍ୟ କଲେ ହତ
ମହୀରାବଣ ମରନ୍ତେ ହୋଇ ହର୍ଷମନ
ଫେରିଲେ ସୁବଳ ଶିଘ୍ରେ ଶ୍ରୀରାମ, ଲକ୍ଷ୍ମଣ । ୪୫ ।

ଦେବୀଦ୍ୱୟ ଫେରି ଲଙ୍କା ଅଶୋକ ବିପିନେ
ବଖାଣିଲେ ବସି ସର୍ବ ସୀତା ସନ୍ନିଧାନେ
ମୋ ଦୁଃଖରେ ଦୁଃଖୀ ହେଲ କିଏ ତୁମ୍ଭେ ବେନି
ପଚରନ୍ତେ ମହାନନ୍ଦେ ସୀତା ଠାକୁରାଣୀ । ୪୬ ।

ବିଷାଦ ଭରା କଣ୍ଠରେ ବେନି ସେ ଭଗିନୀ
କହନ୍ତି ଆମ୍ଭର ନାମ ଶ୍ରୀ ତାରାତାରିଣୀ
ପୁଣ୍ୟ ଋଷି କନ୍ୟା ଘରେ ଦକ୍ଷ ସୁତା ପୁନ
ପତନରୁ ଆମ୍ଭେ ଦୁହେଁ ଲଭିଛୁ ଜନମ । । ୪୭ ।

ବଶିଷ୍ଠଙ୍କ ଶାପ ଯୋଗୁଁ ତୁମ୍ଭ ନୟନରେ
ଆଶ୍ରା କରିଥିଲୁ ମାତଃ; ସୌଭାଗ୍ୟ ବଳରେ
ଏବେ କେଉଁ ଆଡ଼େ ଯିବୁ କି କରିବୁ କହ
ନୟନୁ ବାହାରି ତବ ନିଦର୍ଶେ ଉପାୟ । ୪୮ ।

ଦୟା କରି ଶାପମୁକ୍ତ କରି ହେ ଜନନୀ
ଆଜ୍ଞା ଦେବ ଯହିଁ, ତହିଁ ରହି ଭଗ୍ନୀ ବେନି

ତୁମ୍ଭର ସେବାରେ ଆମ୍ଭେ କଟାଇବୁ ଦିନ
ନ ଜାଣିବୁ ତୁମ୍ଭ ବିନା ଜୀବନରେ ଆନ । ୪୯ ।

ବିଷାଦ ଭରା କଣ୍ଠରେ କହନ୍ତି ଜାନକୀ
ତୁମ୍ଭ ଉପକାର କେବେ ସୁଝି ପାରିବି କି
ମାତ୍ର ଆମ୍ଭ କୁଳଗୁରୁ ବଶିଷ୍ଠଙ୍କ ଶାପ
ଲଂଘି ନପାରନ୍ତି ଦେବ, ମାନବ, *କୌଣପ । ୫୦ ।

ମୋହର ମଧ ଲଂଘିବା ଶକ୍ତି ଥିଲେ ନାହିଁ
ପଞ୍ଚମାଗଧ ଅଟନ୍ତି ବଶିଷ୍ଠ ଗୋସାଇଁ
ତେଣୁ ପୂର୍ବପରି ତୁମ୍ଭେ ଋଷି କନ୍ୟା ଘରେ
ଶାପ ମୁକ୍ତି ଯାଏଁ ରହ ପର୍ବତ ଉପରେ । ୫୧ ।

ମହା ଘୋର ସଙ୍କଟରୁ ମୋ ସ୍ୱାମୀ, ଦେବର
ରକ୍ଷା କଲ ତୁମ୍ଭେ ବେନ ଦୁଃଖ ଦେଖି ମୋର
ଶ୍ରୀ ତାରତାରିଣୀ ଏଣୁ ସଙ୍କଟ ତାରିଣୀ
ଜନଜାଳେ ସଙ୍କଟରୁ ଉଦ୍ଧରିବ ପ୍ରାଣୀ । ୫୨ ।

ମୋହର ସନ୍ତୋଷେ ତୁମ୍ଭେ କାଳଜୟୀ ହେବ
କଳି କଲ୍ମଷ ନାଶନ ବାନା ଉଡ଼ାଇବ
ଦେଖିଛି ସେ ପରବତ ଅପରୂପ ଶୋଭା
ପିଛୁଡ଼ି ନପାରି ତଳେ ନୟନର ଆଭା । ୫୩ ।

'ତାରତାରିଣୀ' ପର୍ବତ ରହୁ ତାର ନାମ
ଘୋର କଳିକାଳେ ବଢ଼ୁ ତାହାର ସୁନାମ

* କୌଣପ = ଅସୁର

ପର୍ବତ ଉପରୁ ଆସି କୋକିଳର ତାନ
ବିମୋହିତ କରୁଥିଲା ବହୁ ଜନ ମନ । ୫୪ ।

ଭରିଥିଲା ପୁର, ଯାଇ, ଗୋଲାପ, ମନ୍ଦାର
କୃଷ୍ଣଚୂଡ଼ା, କାଠଚମ୍ପା, ମଲ୍ଲୀ, ନାଗେଶ୍ୱର
ଅପରାଜିତା, କଦମ୍ବ, ତମାଳ, ଟଗର
ଅଶୋକ, ବକୁଳ, ଆମ୍ବ, ରମ୍ଭା, କନିଅର । ୫୫ ।

ବିକଶିତ ଥିଲା ଶୋଭା ସୁଗନ୍ଧ ଯାହାର
ପାସୋରି ନ ଯିବ ମନୁ କଦାପି ମୋହର
ଦେଖିଥିଲୁ ଋଷିକୁଲ୍ୟା ସେ ପୁଣ୍ୟ ସରିତ
'ଦଣ୍ଡକ' ଆସିଲାବେଳେ ସ୍ୱାମୀଙ୍କ ସହିତ । ୫୬

ସାନ୍ନଶେଷେ କହୁଛନ୍ତି ମୋତେ ମୋର ସ୍ୱାମୀ
କପିଳ ମୁନିଙ୍କ ପିତା ସେ କର୍ଦ୍ଦମ ମୁନି
ଘନେ ସେହି ଋଷିମାନ ପର୍ବତ ଉପରେ
ତପସ୍ୟାରେ ରତଥିଲେ ନିଦାଘ କାଳରେ । ୫୭ ।

ଏ ସମୟେ ଶିଷ୍ୟ ମଧ୍ୟେ ପଡ଼ିଲା ଚହଳ
ନମିଳଇ କେଉଁ ଠାରେ ଟୋପାଏ ସଲିଳ
ଶୁଣି କର୍ଦ୍ଦମ ମହର୍ଷି ଅଥୟ ଚିତ୍ତରେ
ଦଣ୍ଡାଘାତ କଲେ ନିଜ ଆସ୍ଥାନ ପାଖରେ । ୫୮ ।

ବାହାରିଲା ଝର, ଝର ସୁନିର୍ମଳ ନୀର
'ଋଷିକୁଲ୍ୟା' ନାମ ତାର ଦେଲେ ମୁନିବର
କହୁଛନ୍ତି ସ୍ୱାମୀ ଯେ ପରମ ସନ୍ତୋଷେ
ଗଙ୍ଗା ଠାରୁ ବଡ଼ ଏହୁ ହଜାରେ ବରଷେ । ୫୯ ।

ଏଣୁ ଋଷିକୁଲ୍ୟା ଗଙ୍ଗାଙ୍କର ଜ୍ୟେଷ୍ଠ ଭଗ୍ନୀ
ଦେବନ ଏହାର ନାଁର ପତିତ ପାବନୀ
ମିଶିଅଛୁ ଯେଉଁଠି ଏ ମହାସିନ୍ଧୁ ନୀରେ
* ଅଗସ୍ତି ମୁନି ଆଶ୍ରମ ରହିଛୁ ଅଦୂରେ । ୭୦ ।

ଏହି ପ୍ରତ୍ୟେକ ନଦୀ ଜଳେ କରି ସ୍ନାନ
* ନଭ ମଣ୍ଡଳରେ ମୁନି ଲଭିଛନ୍ତି ସ୍ଥାନ
ଏହି ନଦୀ ତୀରେ, ତୀରେ କୌଶଲ୍ୟା ନନ୍ଦନ
ବହୁ ଶିବ ଲିଙ୍ଗ କରି ଅଛନ୍ତି ସ୍ଥାପନ । ୭୧ ।

ସେ ମଧ୍ୟରେ 'ପଞ୍ଚାନନ' ପ୍ରଭୁ ଭୁମେଶ୍ୱର
ମହା ଘୋର ସଙ୍କଟରୁ କରନ୍ତି ଉଦ୍ଧାର
ମହା ସତୀ ସୀତାଙ୍କର ଉପଦେଶ ଶୁଣି
ହରଷ, ବିଷାଦଭରେ ସ୍ତ୍ରୀ ତାରାତାରିଣୀ । ୭୨ ।

ଫେରିଲେ ପର୍ବତ ଶିଖେ ଋଷିକୁଲ୍ୟା ତୀରେ
ଅପ୍ରକଟେ ରହିଲେ ସେ ଆତ୍ମ ଗୋପନରେ
ବେଳେ ବେଳେ ଋଷିକୁଲ୍ୟା ତଟ ବନାନ୍ତରେ
ଭ୍ରମି ବଢ଼ାଅନ୍ତି ଜନ ପ୍ରୀତି ଆନନ୍ଦରେ । ୭୩ ।

କେତୁ କାଳ ଅନ୍ତେ ପୁଣି ଦ୍ୱାପର ଅନ୍ତରେ
ପ୍ରବେଶିଲା କଳିକାଳ ପ୍ରଖର ବେଗରେ
କଳି ପ୍ରବେଶିବା ଜାଣି ସେ ତାରତାରିଣୀ
ମଉନରେ ବସିଥାନ୍ତି ଧ୍ୟାନ ଗଣିଗଣି । ୭୪ ।

---

* ଗଞ୍ଜାମ ସଦର ନିକଟବର୍ତ୍ତୀ ଅଗସ୍ତି ନୁଆଁ ଗାଁରେ ଅଗସ୍ତି ମୁନିଙ୍କ ଆଶ୍ରମ ଥିଲା ବୋଲି ଜନଶ୍ରୁତି ଅଛି । * ନଭ = ଆକାଶ

କେଉଁ ଦିନ ଆସିବ ସେ ଅମୃତ ଲଗନ
'ବସୁ ପ୍ରହରାଜ' ମର୍ତ୍ତ୍ୟେ ଲଭିବେ ଜନମ
ବଶିଷ୍ଠଙ୍କ ଶାପ ଅବା ଅନ୍ୟଥା ହୋଇବ
ଆମ୍ଭ ଜନମ ଏଥର ନିରର୍ଥକ ହେବ । ୬୫ ।

ଏହି କଥା ଭାଳି, ଭାଳି ସେ ବେନି ଭଗିନୀ
ଅତି ସନ୍ତାପିତେ ଅସହାୟ ପ୍ରାୟ ମଣି
ସ୍ୱୟଂ ଆଦ୍ୟଶକ୍ତି ଯିଏ ଭୁବନ ମୋହିନୀ
ବ୍ରହ୍ମର୍ଷିଙ୍କ ଅଭିଶାପେ ଅଭିଶପ୍ତା ପୁଣି । ୬୬ ।

ବିଳାପରେ ମତିଭ୍ରମ ହୁଏ ବାରଂବାର
ଯେହେତୁ ମୁନିଙ୍କ ଶାପ ଥିଲା ଯେ କଠୋର
ତଥାପି ସେ ଧୈର୍ଯ୍ୟହରା ଅଧିର ନହୋଇ
ପ୍ରତୀକ୍ଷା କରିଲେ ପୁଣି କର୍ମଫଳ ନେଇ । ୬୭ ।

ବହୁଁ ବହୁଁ ଆସିଗଲା ଶାପମୁକ୍ତ ଦିନ
ଦେବୀଙ୍କୁ ଭାଗ୍ୟବିଧାତା ହୋଇଲେ ପ୍ରସନ୍ନ
ବସୁ ପ୍ରହରାଜ ଜନ୍ମ ସୁସମ୍ବାଦ ପାଇ
ଗୋପନେ ବସୁଙ୍କୁ ଯାଇ ଦେଖିଲେ ସେ ଦୁଇ । ୬୮ ।

'କୁମାରୀ' ନାମକ ଏକ କ୍ଷୁଦ୍ର ପଲ୍ଲୀଗ୍ରାମେ
ଭାଗ୍ୟବାନ ଶିଶୁ ବସୁ ପ୍ରହରାଜ ନାମେ
ଜନ୍ମିଛନ୍ତି ମଧ୍ୟବିତ୍ତ ବ୍ରାହ୍ମଣ କୁଟୁମ୍ବେ
ଦେବୀଙ୍କ ଭାଗ୍ୟ ନକ୍ଷତ୍ର ହେବ ଅବଲମ୍ବେ । ୬୯ ।

କୁମାରୀ ଗ୍ରାମରୁ ଯାଇ * 'ଖଣ୍ଡଡା ଶାସନେ'
କଶୋର କାଳରୁ ବସୁ ହେବ ଅଧିଷ୍ଠନେ

* ଖଣ୍ଡଡ଼ା = ଶ୍ରୀର ଜଗନ୍ନାଥପୁର ଶାସନ

ତତ୍କାଳୀନ ବିଦ୍ୱାନଙ୍କ ପ୍ରିୟପାତ୍ର ହୋଇ
ମହାଜ୍ଞାନୀ ରୂପେ ତାଙ୍କ ଯଶ ବୃଦ୍ଧି ପାଇ । ୭୦ ।

ମଧ୍ୟମ ବୟସେ ହେଲେ ଶାସ୍ତ୍ରଜ୍ଞ, ତନ୍ତ୍ରଜ୍ଞ
ଆୟତ୍ତ କରିଲେ ବେଦ, ବେଦାନ୍ତ ନିୟମ
ଦେବୀ ଅନୁକମ୍ପା କିମ୍ବା ଜନ୍ମ ଜାତକରୁ
ବହୁ ପ୍ରହରାଜ ଖ୍ୟାତି ବଢ଼ିବା ଉପରୁ । ୭୧ ।

ଗର୍ଭର ଦୁଃଖରେ ସିଏ ହେଲେ ମ୍ରିୟମାଣ
ନିସନ୍ତାନ ହୋଇ ବିପ୍ର କାଟୁଥିଲେ ଦିନ
ତଥାପି ସାଧନାବନ୍ତ ହରଷ ଚିତ୍ତରେ
ଦିବା, ନିଶି, ନିମଜ୍ଜିଲେ ଶକ୍ତି ସାଧନାରେ । ୭୨ ।

ଏଥି ଅନ୍ତେ ଏକଦା ସେ ଦେଖିଲେ ସପନ
ଦୁହିତା ଦୁଇଟି ତାଙ୍କୁ ହୋଇବ ପ୍ରଦାନ
ସେ ଦୁହିଁଙ୍କୁ ପାଳିବେ ସେ ନିଜ ସୁତାଭଳି
ସ୍ନେହ, ଆଦର, ସର୍ବ ଶୁଭାଶିଷ ଢ଼ାଳି । ୭୩ ।

ମନେ ମନେ ଆନନ୍ଦିତ ହେଲେ ବିପ୍ରବର
ଭାବିଲେ ସେ ଅଟେ ଏହା ଦେବୀଙ୍କ କଲ୍ୟାଣ
ସତ୍ୟ ହେଲା ଶୁଭ ସ୍ୱପ୍ନ ସେ ଦୁହିତା ଦୁଇ
ବସୁ କନ୍ୟା ରୂପେ ତହିଁ ପରିଚୟ ଦେଇ । ୭୪ ।

ଏହାପରେ କିଛି କାଳ ଅନ୍ତେ ଅନ୍ତର୍ଦ୍ଧାନ
ହେଲେ ତାଙ୍କ ଠାରୁ ଦୁଇ ଦୁହିତା ରତନ
ସେ ତାରତାରିଣୀ ଦେବ ମହାମାୟୀ ଭବେ
ମାୟା ରଚିଥାନ୍ତି ସଦା ଏ ବିଶାଳ *ଭବେ । ୭୫ ।

* ଭବେ = ପୃଥିବୀରେ

ତଥାପି ବସିଷ୍ଠ ତଥା ଅତି ଦୁଃଖ ମନେ
ଅନ୍ୱେଷଣ କଲେ ବସୁ ନଗ୍ର, ଗ୍ରାମେ, ଗ୍ରାମେ,
ବହୁ ଅନ୍ୱେଷଣ ପରେ ଦୁଃଖେ ବନେ ବସି
ଅଛନ୍ତି ଏକାନ୍ତେ ଏକ କାତର ପ୍ରବେଶି । ୭୬ ।

କହିଲ ଗୋସାଇଁ ତୁମ୍ଭ ଦୁଇ ଝିଅ ଯାଇ
ପିନ୍ଧିଛନ୍ତି କଳାକାଚ ମୂଲ୍ୟ ତା ନଦେଇ
ଦୟାକରି ପାଉଣା ମୋ ଶୀଘ୍ର ଦେଲେ ଯିବି
ଗରିବ ବାପୁଡ଼ା ମୁହିଁ ଜଗି ନପାରିବ । ୭୭ ।

ଶୁଣି ବସୁ ପ୍ରହରାଜ ଆଚମ୍ବିତ ହେଲେ
କେଉଁ ଆଡ଼େ ଗଲେ କନ୍ୟା ଜାଣି ନ ପାରିଲେ
ଶୟନ କକ୍ଷରେ ଦୁଃଖେ ରହିଛନ୍ତି ରାତେ
ସ୍ୱର୍ଣ୍ଣ କଣପାରି ନାହିଁ ନିଦ୍ରା ତିଳେ ମାନେ । ୭୮ ।

ଏ ସମୟେ ବେଦ ସୁତା ପାଶେ ଉଭା ହୋଇ
ସକଳ ବୃତ୍ତାନ୍ତ ତାଙ୍କୁ କହିଲେ ବୁଝାଇ
ଦିବ୍ୟଜ୍ୟୋତି ପ୍ରକାଶିଲା ଶୟନ କକ୍ଷରେ
ଆଦ୍ୟଶକ୍ତି ସ୍ୱର୍ଣ୍ଣଦେବୀ ଆବିର୍ଭୂତା ହେଲେ । ୭୯ ।

ବ୍ରହ୍ମଜ୍ଞାନୀ ବିପ୍ର ସେହି ବସୁ ପ୍ରହରାଜ
ଦେବୀ ଦରଶନେ ହେଲେ ଅତ୍ୟନ୍ତ ଆଶ୍ଚର୍ଯ୍ୟ
କଳ୍ପନା କରି ନପାରି ସେ ଜ୍ୟୋତିର୍ମୟୀଙ୍କୁ
ସାଷ୍ଟାଙ୍ଗେ ପ୍ରଣାମ କଲେ ପଦାର ବନ୍ଦକୁ । ୮୦ ।

ସ୍ମିତ ହସି ଆଶିଷ ଯେ ଦେଲେ ମହାମାୟୀ
ତୁମ୍ଭ କନ୍ୟା ରୂପେ ଥିଲୁ ଆମ୍ଭେ କୃପାମୟୀ

ତାରତାରିଣୀ ପାହାଡ଼ ଶିଖର ଉପରେ
ଯହିଁ ସ୍ତନାକୃତି ଶିଳା ତହିଁ ଆମ୍ଭେ ଅଛେ । ୮୧ ।

ଦୁଇ ମୁରତି ହେଲେ ହେଁ ଏକ ମାତ୍ର ଶକ୍ତି
ମହିମା ବଳରେ ଖଣ୍ଡେ ସକଳ ବିପତ୍ତି
ଶୁଣ ନୃପବର ଆମ୍ଭେ ଏ କଳି କାଳରେ
ପୂଜା ପାଇବୁ ଏ କଥା ରଖ ହୃଦୟରେ । ୮୨ ।

ଏହା କହି ଅନ୍ତର୍ଦ୍ଧାନ ହେଲେ ଶକ୍ତିମୟୀ
ବସୁ ଭୂଦେବଙ୍କ ନିଦ୍ରା ଭାଙ୍ଗିଗଲା ତହିଁ
କାହାକୁ ନକହି ଏକା, ଏକା ଭୂଦେବଙ୍କ
ସ୍ନାନ, ଶୌଚ ସାରି ପ୍ରାତେ ହେଲେ ସଜବାଜ । ୮୩ ।

କ୍ଲାନ୍ତି, ଅବସାଦ ଭୁଲିଗଲେକ ବଦନ
ପହଞ୍ଚିଲେ ଯାଇ ତାରତାରିଣୀ ଆସ୍ଥାନ
ସ୍ତନାକୃତି ଶିଳାଦ୍ୱୟେ ଥାପିଲେ ସେ ହାତ
ଜାଣିଲେ ତା ଅମୃତରେ ହୋଇଅଛି ସିକ୍ତ । ୮୪ ।

ପୁଣି ହସ୍ତ ସଞ୍ଚାଳନ କରନ୍ତେ ସଧୀରେ
ଶବ୍ଦ ହେଲା ସୁବର୍ଣ୍ଣର ଫଳକ ଉପରେ
ଖୋଦିତ ଯନ୍ତ୍ରରେ ଅଛେ ଶ୍ରୀ ତାରତାରିଣୀ
ପ୍ରଣମିଲେ ବସୁ ଆଦ୍ୟଶକ୍ତି ବୋଲି ଜାଣି । ୮୫ ।

ଆନନ୍ଦ ସାଗରେ ବୁଡ଼ ନନ୍ଦଶଇ ବୁଡ଼ି
ଲଭିଅଛି ଅବା ଧ୍ୟାନ, ଧ୍ୟାନ କୋଟି ନିଧି
ବାରମ୍ବାର ଦେବୀ ପଦେ କରନ୍ତି ଜୁହାର
କହନ୍ତି ମା ଦୂର କର ଅଜ୍ଞାନ ଅନ୍ଧାର । ୮୬ ।

ଏହିପରି କହି ଆରମ୍ଭିଲେ କାନୀ ସ୍ତୁତି
ଜୟ ମା ତାରାତାରିଣୀ ଜୟ ଭଗବତୀ
ଜୟ ମା ତାରାତାରିଣୀ ପର୍ବତ ବାସିନୀ
ଜୟ ମା ତାରାତାରିଣୀ ଅଭୟ ଦାୟିନୀ । ୮୭ ।

ତୁମ୍ଭ ମା ଏ କନକାଳେ ଆଲୋକ ବର୍ତ୍ତିକା
ନଥାଏ ତୋର ଆଶ୍ରିତେ ଅଣୁ ମାତ୍ର ଶଙ୍କା
ଏହିପରି ନାନା ସ୍ତବ କରି ପ୍ରହରାଜ
ମନ୍ଦିର ତୋଳିବା ପାଇଁ ହେଲେ ସଜବାଜ । ୮୮ ।

କୁଶଳୀ କାରିଗରଙ୍କୁ ଡକାଇ ଆଣିଲେ
ଅକ୍ଷୟ ତୃତୀୟା ଦିନେ ଶିଳାନ୍ୟାସ କଲେ
କହିଲେ ଶୁଣ ହେ ବାବୁ ସର୍ବ କାରିଗର
ଶୀଘ୍ର ହେଉ ପଛେ ହେବ ସୁନ୍ଦର ମନ୍ଦିର । ୮୯ ।

ମନ୍ଦିର ଗାତ୍ରେ ରହିବେ ଦଶ ମହାବିଦ୍ୟା
ତାରିଣୀଙ୍କ ଛାଇ ହେବେ ସେ ମଧ୍ୟେ ପ୍ରସିଦ୍ଧା
ଅନ୍ୟମାନଙ୍କ ମଧ୍ୟରେ ଷୋଡ଼ଶୀ, ବଗଳା
ଛିନ୍ନମସ୍ତା, ଧୂମାବତୀ, ମାତଙ୍ଗୀ, କମଳା । ୯୦ ।

ଭୁବନେଶ୍ୱରୀ, ଭୈରବୀ, କାଳୀ ମୁକ୍ତକେଶୀ
ଭକ୍ତ ଦୁଃଖ ବିନାଶିନୀ ଭକ୍ତଚିତ୍ତ ନାଶୀ
ସେହିପରି କାର୍ତ୍ତିକେୟ, ଗଣନାଥ ମୂର୍ତ୍ତି
ଶ୍ୟାମା କାଳୀ, ଭଦ୍ରକାଳୀ, ଲକ୍ଷ୍ମୀ ସରସ୍ୱତୀ । ୯୧ ।

ଉଗ୍ରନାଭି କମଳରୁ ସମ୍ଭବା ଭୈରବୀ
ରଖିବ ହେ କାରିଗରେ ସୁଚିନ୍ତିତେ ଭାବି

ମନ୍ଦର ଚୂଡ଼ାର ଦଧିନଉତି ଉପରେ
ପୂର୍ଣ୍ଣକୁମ୍ଭ ସଯତନେ ରଖିବ ବିଧିରେ । ୯୨ ।

ସେ କୁମ୍ଭ ଉପରେ ଦେବୀ ଆଶିଷ ପତାକା
ଫର ଫର ଉଡ଼ ମନୁ ଛଡ଼ାଇବ ଦକା
ଉପସ୍ଥିତ କାରିଗରେ ମନମତ କଲେ
ଦୁଇ ମାସରେ ମନ୍ଦର ପୂର୍ଣ୍ଣ କରିଦେଲେ । ୯୩ ।

ଯଥାକାଳେ ନିର୍ମାଣିଲେ ମନ୍ଦର ପ୍ରାଚୀର
ମଞ୍ଜକୁଣ୍ଡ ସମ୍ମୁଖରେ ପ୍ରବେଶ ଦୁଆର
ଆଜ ଏକ ଅଘଟଣ ଏକାଳେ ଘଟିଲା
ଫଳରେ ପ୍ରଦ୍ମରାଜଙ୍କ ଜ୍ଞାନ ଉଦେ ହେଲା । ୯୪ ।

ନିତ୍ୟା ଚେଳ ପ୍ରଦ୍ମରାଜେ ଶଯ୍ୟା ତ୍ୟାଗ କରି
ବସିଛନ୍ତି ନିରେଳାରେ ନିତ୍ୟକର୍ମ ସାରି
ଏ ସମୟେ କବାଟରେ କରାଘାତ ଶୁଣି
ମନୁ ଶନ୍ତା ପରିଦ୍ୱର ଆସିଲେ ସେ କ୍ଷଣି । ୯୫ ।

ଦୁଆର ଖୋଲି ଦେଖନ୍ତେ ଦେବଦୂତ ସମ
ପଚ୍ଚରି ଜାଣିଲେ ଏକ ବଣିଆ ଉତ୍ତମ
ବିଶ୍ୱକର୍ମା ପୁତ୍ର କବା ବଣିଆ ଆସିଛୁ
ଅଷ୍ଟ ଧାତୁରେ ନିର୍ମିତ ମୂର୍ତ୍ତି ଧରିଅଛୁ । ୯୬ ।

ଭକ୍ତିପୂତ ହୃଦେ ତାଙ୍କୁ ସେହି ମୂର୍ତ୍ତି ଦେଲେ
ଦରଶନେ ମୂର୍ତ୍ତି ବନ୍ଧୁ ବିସ୍ମିତ ହୋଇଲେ
ମୁଖମଣ୍ଡଳର ଶୋଭା ବିଦମଣି ଜଣେ
ଶାନ୍ତ, କାନ୍ତ ରୂପ କୋଟି ଜନମନ କିଣେ । ୯୭ ।

ଦେଖି କୁମାରୁ ଦୁଇଟି ଚଳନ୍ତ ପ୍ରତିମା
ପ୍ରତିଷ୍ଠିତ ହେଲା ପୀଠେ ବଢ଼ାଇ ମହିମା
ଆହା କି ସୁନ୍ଦର ରୂପ ଆହା କି ସେ ମୂର୍ତ୍ତି
ଯାଣେ ଉଭା ହେଲେ ଭକ୍ତ ହରଏ ତା ଧୃତି । ୯୮ ।

ଥରେ ସେ ଅମୃତମୟୀ ମୂରତି ଦର୍ଶନେ
ପାଷାଣ ହୃଦୟେ ମଧ ଭକ୍ତିଭାବ ଜନ୍ମେ
ସାଧୁ, ସନ୍ଥ ଭାବେ ମନେ ଜନ୍ମ ଦାତ୍ରୀ ସମ
ଅସାଧୁ ଭାବଇ ଚଣ୍ଡୀ କାଳାନ୍ତକ ଯମ । ୯୯ ।

ଏଥିଁ ବଳି ଅପରୂପ ଶୋଭା ଭୂମଣ୍ଡଳେ
ନାହିଁ ନଥିବ ନହେବ ଚହୁଁ କାଳେ କାଳେ
ମାତୃ କୃପା ନହେଲେ ସେ ରୂପକେ ବର୍ଣ୍ଣିବ
ବୃହସ୍ପତି ହେଲେ ମଧ ମୂର୍ଖ ଗଣା ହେବ । ୧୦୦ ।

ମନ୍ଦିର ମୂରତି ଗଢ଼ା ହେବାରୁ ସଂପୂର୍ଣ୍ଣ
ପ୍ରତିଷ୍ଠା ନିମନ୍ତେ ବସୁ କଲେ ଆୟୋଜନ
ପର୍ବତର ପାଦଦେଶେ ଉପଯୁକ୍ତ ସ୍ଥାନ
ମହାଯଜ୍ଞ ପାଇଁ କରାଗଲା ନିରୂପଣ । ୧୦୧ ।

ଗ୍ରାମ ଗ୍ରାମୁଁ, ନଗ୍ର, ନଗ୍ରୁଁ ଆସି ବହୁ ଜନେ
ଉପସ୍ଥିତ ହେଲେ ସେହି ମହାଯଜ୍ଞ ସ୍ଥାନେ
ଜନ କୋଳାହଳେ ଯଜ୍ଞସ୍ଥଳୀ ଗର୍ଜି ଉଠେ
ଜୟ ମା ତାରତାରିଣୀ ସମସ୍ତଙ୍କ କଣ୍ଠେ । ୧୦୨ ।

ଜନ୍ମଦାତ୍ରୀ ପାଶେ ଥିଲେ ସନ୍ତାନ ଯେପରି
କାର୍ଯ୍ୟରତ ଥାଏ ମନେ ଉଦ୍ଦୀପନା ଭରି

ମହାମାୟୀ ଶ୍ରୀ ତାରତାରଣୀ ଠାକରେ
ଭରପୂର୍ଣ୍ଣ ହୁଏ ଶକ୍ତି, ଭକ୍ତି, ହୃଦୟରେ । ୧୦୩ ।

କେତେ ଜନଶ୍ରୁତି ଜନ ସମାଗମ ପାଇଁ
ଅଦୃଶ୍ୟରେ କାଠ ଛୁଣୁ ଝୁଣୁ ଶୁଭୁଥାଏ
ଉଲ୍ଲସିତ ହୁଏ ସେହି ଶବଦରେ ମଧ
ଜାଗଏ ଭକ୍ତ ପ୍ରାଣେ ଶ୍ରଦ୍ଧା, ସ୍ନେହ, ପ୍ରୀତି । ୧୦୪ ।

ଏହି ମହାରାଜଙ୍କ ଏକ ବଂଶ ଧନ ଧର
ଚଳିଥିଲା ଅବିରତ ଦିବସ ଶର୍ବରୀ
ଚୂଳି ଭରଣ ଖରଚ ହେଲା * ଗବ୍ୟ ଘୃତ
ଯେଣୁ ହବିଃଭୋଗ ନେଲେ ସକଳ *ଦୈବତ ।୧୦୫।

ପାକସିଦ୍ଧ ହୋଇଥିବ କେତେ ପଞ୍ଚ ଅନ୍ନ
ବହୁର କର ସୁଚତେ ଆହେ ବଞ୍ଚ ଜନ
ପରଜଣା ପାଇଁ ଡାଲି, କାନିକା, ବ୍ୟଞ୍ଜନ
ଖର୍ଚ୍ଚ ହୋଇଥିଲା ଭବ ଦ୍ୱାଦଶ ଭରଣ । ୧୦୬ ।

ମନ୍ଦିର ପ୍ରତିଷ୍ଠା ପୁଣି ପ୍ରତିମା ପ୍ରତିଷ୍ଠା
ଶେଷ ହେଲା ସମାରୋହ ସକଳ ଯେ ନିଷ୍ଠା
ଏକ ବଂଶ ଧନେ ଦେଖି ଅମୃତ ଲଗନ
ବଜାଇଁ ଘଣ୍ଟ, ମୃଦଙ୍ଗ, ଶୁଭଶଙ୍ଖ ସ୍ୱନ । ୧୦୭ ।

ତାରତାରଣୀ ପ୍ରତିମା ସ୍ୱହସ୍ତରେ ନିଜେ
କରାଇଲେ ସହରାଜେ ମନ୍ଦିରରେ ବିଜେ

---

* ଗବ୍ୟଘୃତ = ଗୁଆଘିଅ
* ଦୈବତ = ଦେବତା

ଜୟଧ୍ୱନି କଲେ ଦେବେ ରହି ଅନ୍ତରୀକ୍ଷେ
ବୃଷ୍ଟି କଲେ ନାନା ପୁଷ୍ପ ଦେବାଳୟ ବକ୍ଷେ ।୧୦୮।

ସେହି ଦିନ ଠାରୁ ତାରତାରିଣୀ ମହିମା
ପ୍ରଖ୍ୟାତ ହେଲା ହିପୁରେ ଲଂଘି ସର୍ବସୀମା
"ସିପିନ୍ଦି" ନାମକ ଜାତି ପୂଜାର୍ଚ୍ଚନା ପାଇଁ
ନିଯୁକ୍ତ ହେଲେ ବସୁ ନିର୍ଦ୍ଦେଶାନୁଯାୟୀ । ୧୦୯ ।

ଅନ୍ୟ ଏକ ଦିନେ ବସୁ ଦେଖିଲେ ସପନ
ତାରତାରିଣୀ ସମ୍ମୁଖେ ହୋଇ ବର୍ତ୍ତମାନ
କହିଲେ ହେ ପିତା ପୂଜା ଷୋଡ଼ଶୋପଚାରେ
କରାଇବ ତନ୍ତ୍ର ତଥା ବୈଦିକ ବିଧିରେ । ୧୧୦ ।

ଚଇତ୍ର ମଙ୍ଗଳବାର ପ୍ରତି ସକଳନ୍ତି
ଶାରଦୀୟ ପୂଜା ପୁଣି ଦୀପାବଳୀ ରାତି
ଆମ୍ଭ ଦର୍ଶନ ରୂପେ ହୋଇବ ପାଳନ
ଆଶୀର୍ବାଦ ନେବେ ଉପସ୍ଥିତ ଭକ୍ତଗଣ । ୧୧୧ ।

ସ୍ୱପ୍ନବାଣୀ ଚତୁର୍ଦ୍ଦିଗେ ହେଲା ପ୍ରଚାରିତ
ସାରା ଭାରତ ବର୍ଷରୁ ଲକ୍ଷ ଲକ୍ଷ ଭକ୍ତ
ଏହି ଦିନ ମାନଙ୍କରେ ପୀଠକୁ ଆସନ୍ତି
ପତ୍ନୀ ପତ୍ନୀ, ମାତା, ପିତା, କନ୍ୟା ପନ୍ତି ପନ୍ତି । ୧୧୨ ।

ଦୂର ଦିନ ଆଗୁଁ କେହି ଦୂର ଦୂରାନ୍ତରୁ
ଚାଲି ଚାଲି ଆସେ ନୋହି ପଥ ଶ୍ରାନ୍ତେ ଥାରୁ
ଗାଡ଼ିରେ କେ ଆସେ କେହି ଆସେ ଶଗଡ଼ରେ
ଲୋକାରଣ୍ୟେ ହୁଏ ପଞ୍ଚକୋଶ ଆବାନ୍ତରେ । ୧୧୩ ।

ମାନସିକ ପୂର୍ଣ୍ଣ ଅନ୍ତେ ପିତା, ମାତାଙ୍କର
* ମୁଣ୍ଡନ କରନ୍ତି ଶିଶୁ ହଜାର ହଜାର
ସେହି ଲୋକାରଣ୍ୟ ସେସ୍ଥ ନେଥେ ନ ଦେଖିବ
କବି କଳ୍ପନା ବୋଲି ଅବଶ୍ୟ ଭୁଦବ । ୧୧୪ ।

ପର୍ବତର ପାଦ ଦେଶୁ ବହୁ ଦୁଃଖ କଷ୍ଟେ
କଣ୍ଟକିତ ପଥ ଦେଇ ମନ୍ଦିର ନିକଟେ
ବିଭିନ୍ନ ପଥରେ ଯାଇ ପହଞ୍ଚିବା ଦେଖି
ମନରେ ତାରତାରିଣୀ ହୋଇଣ ଅସୁଖୀ । ୧୧୫ ।

ସେହି ଦିନ ଅର୍ଦ୍ଧରାତ୍ରେ ସପନରେ ପୁଣି
କହିଲେ ପ୍ରହରାଜଙ୍କୁ ଶ୍ରୀ ତାରତାରିଣୀ
ବହୁ ଭକ୍ତ ଆମ୍ଭ ପାଖେ ଆସି ନପାରନ୍ତି
ପାହାଚ ବିହୁନେ ପାଦଦେଶୁ ଫେରୁଛନ୍ତି । ୧୧୬ ।

ତୁମ୍ଭ ପରିଚିତ ଏକ ଭକ୍ତ ଅଂଶ ବ୍ୟକ୍ତି
ନିଃସନ୍ତାନ ହୋଇ ବ୍ରହ୍ମପୁରେ ରହିଛନ୍ତି
ତିନି ଗମେପ୍ସା ଅଟଇ ନାମଟି ତାହାର
ପର୍ବତକୁ ପାହାଚ ସେ ଗଢ଼ିବ ଆମ୍ଭର । ୧୧୭ ।

ମନ ବାସନା ନିଶ୍ଚୟ ପୂର୍ଣ୍ଣ ହୋଇଯିବ
ଆମ୍ଭ ପ୍ରସାଦେ ତାହାର * ଦୁହିତା ଜନ୍ମିବ
ବହୁ ପ୍ରହରାଜ ଠାରୁ ଶୁଣି ଏ ବାରତା
ତିନି ଗମେପ୍ସା ମନରୁ ଗୁଡ଼ ସର୍ବଚିନ୍ତା । ୧୧୮ ।

---

* ମୁଣ୍ଡନ = ଲଣ୍ଡା   * ଦୁହିତା ଜନ୍ମ = ପାହାଚ ନିର୍ମାଣ ପରେ ତିନି ଗମେପ୍ସାଙ୍କ କନ୍ୟାଟିଏ ଜନ୍ମ ଲଭିଥିଲା ଯାହାର ନାମ ରଖାଯାଇଥିଲା 'ତାରା'

ତାରତାରଣୀଙ୍କୁ କରି ଶତ ନମସ୍କାର
ପାବଚ୍ଛ ନିଆଣ ଆରମ୍ଭିଲେ ସେ ସତ୍ଵର
ପର୍ବତ ଦେହରୁ କାଟି ଖଣ୍ଡିଏ ପଥର
କାଢ଼ି ନପାରିଲେ ଚେଷ୍ଟା କଲେ ବାରଂବାର ।୧୧୯।

ଅକୃତକାର୍ଯ୍ୟ ହୋଇଣ ଦୁଃଖିତ ମନରେ
ନିଦ୍ରା ଯାଇଛନ୍ତି ନିଶା ଅର୍ଦ୍ଧ ସମୟରେ
ତାରତାରଣୀ ମାଆରେ ପାର୍ଶ୍ବେ ହୋଇଠିଆ
କହନ୍ତି ଶୁଣ ମୋ ଭକ୍ତ ହେ ଠାକୁର ଗମେୟା । ୧୨୦ ।

ଯେଉଁ ପାଷାଣେ ହୋଇବ ପାବଚ୍ଛ ନିର୍ମାଣ
ତା ଉପରେ ରହିଥିବ ରକ୍ତବର୍ଣ୍ଣ ଚିହ୍ନ
ତାହାର ଉପରେ କଲେ ଶାବଳ ଆଘାତ
କୁହ ଦେଲି ତୋର ଶିଳା ହୋଇବ ନିର୍ଗତ । ୧୨୧ ।

ସେ ପାବଚ୍ଛେ ଆସି ଭକ୍ତ ମୋର ପୀଠ ସ୍ଥଳେ
ଦୁଃଖ, କଷ୍ଟ, ଶ୍ରାନ୍ତ, କ୍ଳାନ୍ତ ନ ଲଭିବେ ଟିକେ
ସେ ଠାକୁର ଗମେୟା ଶୀଘ୍ରେ ଯାଅ ଏଠାରୁ
କାର୍ଯ୍ୟାରମ୍ଭ କର ବୋଲି ପ୍ରଭାତ କାଳରୁ । ୧୨୨ ।

ଚେତ ସେ ଗମେୟା ତହୁଁ ତରତରେ ଗଲେ
ବହୁ କାରିଗର ସହ କାର୍ଯ୍ୟ ଆରମ୍ଭିଲେ
ଅତି ଅଳ୍ପ ଦିନେ ଅତି ଅଳ୍ପ ପରିଶ୍ରମେ
ନିଅଣ୍ଟ ଅନେଶ୍ବତ ପାବଚ୍ଛ ସୁଠାମେ । ୧୨୩ ।

ଶେଷ ହୋଇ ଦିଶିଲା ଯେ ଅପୂର୍ବ ସୁନ୍ଦର
ପ୍ରତ୍ୟେକ ଅମରାବତୀ ଯିବା ପାଇଁ ଦ୍ବାର

ପର୍ବତର ପାଦଦେଶୁଁ ଦେଖା ପୀଠ ଯାଏଁ
ପାଞ୍ଚ ଗୋଟି ସିଂହ ଦ୍ୱାର ଅଛୁ ଠାଏଁ ଠାଏଁ ।୧୨୪।

ତାରତାରିଣୀ ମନ୍ଦିରେ ବହୁ ଭକ୍ତ ମିଶି
ନିର୍ମାଣି ସକଳ ପାପ ଦେଇଛନ୍ତି ଧ୍ୱଂସି
ସେହିପରି ଅନ୍ୟ ଏକ ଭକ୍ତ ଶିରୋମଣି
* ଅଭିମନ୍ୟୁ ପ୍ରଧାନ ଯା ନାମ ଖ୍ୟାତ ପୁଣି ।୧୨୫।

ତାରତାରିଣୀ ମହିମା ବାଜିବାରୁ କର୍ଣ୍ଣେ
ଲାଗିଲେ ସେ ବହୁବିଧ ଉନ୍ନତି ସାଧନେ
ପାଦରୁ ଶିଖର ଯାଏଁ କଲେ ସିଡ଼ି ରାସ୍ତା
କଳପାଣି ବିଜୁଳିର ଉତ୍ତମ ବ୍ୟବସ୍ଥା ।୧୨୬।

ଏହିପରି ଭକ୍ତ ପ୍ରାଣ ବିରଳ ଜଗତେ
ପ୍ରାଣ ପାଇଁ ଆନ୍ଦୋଳିତ ସଦା ପର ହିତେ
ଘଣ୍ଟି ଝୁମୁଣ୍ଡିଆ ତାରତାରିଣୀ ପୀଠରେ
ବୃନ୍ଦୁଆ ସଦୃଶ ଦିଶେ ବାସବ ସଭାରେ ।୧୨୭।

ଯେଉଁ ଭକ୍ତଙ୍କର ଯାହା ଅଭିଳାଷ ଥାଏ
ପୂର୍ଣ୍ଣ ହେଲା ମାନେ ସେହୁ ଘଣ୍ଟିଟିଏ ଦିଏ
ମାଳ ମାଳ ହୋଇ ଘଣ୍ଟି ଏହି ପରକାରେ
ଶୋଭା ବିବର୍ଦ୍ଧନ କରେ ଦେବୀଙ୍କ ପୀଠରେ ।୧୨୮।

ଆରତି ସମୟେ ସନ୍ଧ୍ୟା ଅବା ପ୍ରାତଃ କାଳେ
ବାଜେ ଭେରୀ, ତୂରୀ, ଘଣ୍ଟ, ଘଣ୍ଟି ଯେତେବେଳେ

---

* ଅଭିମନ୍ୟୁ ପ୍ରଧାନ = ପୁରୁଷୋତ୍ତମପୁର ଥାନାରେ ଦାରୋଗା ଥିଲେ ।

ଆମୃତର ହୋଇ ଉପସ୍ଥିତ ଭକ୍ତଗଣ
ନଜାଣନ୍ତି ସ୍ୱର୍ଗେ ଅବା ମର୍ତ୍ତ୍ୟେ ସେ ଆସୀନ ।୧୨୯।

ବହୁ ଭକ୍ତ ଜନ ମଠ ଏକ ବଂଶ ଧନ
ଆରମ୍ଭ ଦର୍ଶନେ ନୋହେ ବିଶ୍ୱାସ ଜନମ
ପାହାଡର ଶୀର୍ଷ ସ୍ଥାନ ଦଧିହାଣ୍ଡି ନାମେ
ସୁପରିଚିତ ଅଟଇ ଆଖ, ପାଖ ଗ୍ରାମେ । ୧୩୦ ।

ଏହି ଦଧିହାଣ୍ଡି ଅବା ମନ୍ଦିର ପାର୍ଶ୍ୱରୁ
ଭୂଭାଗର ରମଣୀୟ ଦୃଶ୍ୟପଟ ଦିଶୁ
ଥରେ ଯେ ଦେଖିଛି କେବେ ପାଶୋରି ନପାରିବ
ଯେତେ ଦିନ ଥିବ ଭବେ ଏ ପିଣ୍ଡରେ ଜୀବ ।୧୩୧।

ପୁଣ୍ୟତୋୟା ଋଷିକୁଲ୍ୟା କୁଳୁ, କୁଳୁ ତାନେ
ସର୍ପିଳ ଗତିରେ ଯାଏ ଲୋଭନ ନୟନେ
ନିକଟେ ମିଶିବ ସିନ୍ଧୁ ଲବଣ ସଲିଳେ
ନିଜ ମଧୁରତା ଗୁଣ ନରଖିବ ଛଳେ । ୧୩୨ ।

ସେଥିପାଇଁ ଅସ୍ପଷ୍ଟେ ବା କୁଳୁ, କୁଳୁ ତାନେ
ଡାକେ ତାରତାରିଣୀଙ୍କୁ ସଙ୍କଟ ମୋଚନେ
ଭବ ସାଗରୁ ଉଦ୍ଧାର ହେବା ପାଇଁ ପ୍ରାଣୀ
ଡାକଇ ନିରତେ ଯେହ୍ନେ ଶ୍ରୀ ତାରତାରିଣୀ । ୧୩୩ ।

ବହୁ ସିମନ୍ତିନୀ ପିନ୍ଧି ନାନା ବର୍ଣ୍ଣେ ଶାଢ଼ୀ
ଆସୁଥିବା ବେଳେ, ଦଳ, ଦଳ, ଧାଡ଼ି, ଧାଡ଼ି
ପର୍ବତର ପାଦଦେଶେ ଦିଶେ ମନୋରମ
ପଞ୍ଚବର୍ଣ୍ଣୀ ମୁରୁଜରେ ଖୋଟି ଦେଲା ସମ । ୧୩୪ ।

ପର୍ବତରୁ ଭୂପୃଷ୍ଠର ଶସ୍ୟଭରା କ୍ଷେତ
ଦେଖିଲେ ପିପ୍ପାଡ଼ କେବେ ନ ହୋଇବ ନେତ୍ର
ତାରତାରଣୀ ଦେବୀଙ୍କ ଶୋଭା ବର୍ଦ୍ଧନେ
ସବୁଜ ବସନଟିଏ ଗଢ଼ିଣ ଯତନେ । ୧୩୫ ।

ପ୍ରକୃତ ଦେବୀକ ଅବା ଭେଟି ଦେଇ ଧିରେ
ପାଦଦେଶେ ଶ୍ରଦ୍ଧା ଭରେ ନମଇ ପଯ୍ୟୁରେ
ସେହିପରି ତରବତ ଶିଖେ ବହୁଜନ
ଭୂପୃଷ୍ଠର ଅଷ୍ଟ ଶମ୍ଭୁ କରନ୍ତି ଦର୍ଶନ । ୧୩୬ ।

ସେ ମଧ୍ୟରେ ଖୋଦେଶ୍ୱର ଅଛି ସୁବଦିତ
ତାରତାରଣୀଙ୍କ ଭର୍ତ୍ତା ରୂପେ ଯେ ପୂଜିତ
କିଏ ବା ନ ଜାଣେ କାଳେଶ୍ୱରଙ୍କ ମହିମା
ସଫଳ-ନହୁଏ ଶ୍ରମ କଲେ ଆରାଧନା । ୧୩୭ ।

ତାରତାରଣୀ ପର୍ବତ ଦ୍ୱାର ପାଶ୍ୱରେ
କ୍ଷୁଦ୍ର ପାହାଡ଼ ଗୁଡ଼ିଏ ନିଜ ମସ୍ତକରେ
ତାରତାରଣୀ ଦେବୀଙ୍କୁ ରହିଛନ୍ତି ଘେରି
ଶିଷ୍ୟ ସମୂହ ଗୁରୁଙ୍କ ପାଶେ ଥିବା ପରି । ୧୩୮ ।

ବଧିହାଣ୍ଡି ନିକଟରୁ ଦୃଷ୍ଟି ପଥାରୂଢ଼
ହୁଏ ଅଶୋକଙ୍କ ଶିଳାଲେଖ * ଜଉଗଡ଼
ଅନୁଶାସନ ଚଉଦ ସେଥିରେ ଖୋଦିତ
ଦରଶନେ ଦର୍ଶନାର୍ଥୀ ହୁଏ ଆନନ୍ଦିତ । ୧୩୯ ।

---

* ଜଉଗଡ଼ = ପୁରୁଷୋତ୍ତମପୁର ସହର ଠାରୁ
୫ କି ମି : ଦୂର ପାଣ୍ଡିଆ ଗ୍ରାମ ନିକଟରେ

ଋଷିକୁଲ୍ୟା ଖଣ୍ଡରେ ବହୁ ଶ୍ରେଷ୍ଠ ଶ୍ରେଷ୍ଠ ଗ୍ରାମ
ପର୍ବତ ଉପରୁ ଦେଖାଯାଏ ମନୋରମ
ରଣ୍ଡୋଲ, ହାଣ୍ଡିଘର ସେ ଗୋବିନ୍ଦପୁର
ଖୋଲଘର, ଗଇପୁର, ନରସିଂହପୁର । ୧୪୦ ।

ଏହି ଗ୍ରାମବାସୀଙ୍କର ନାହିଁ ଭୟଭ୍ରାନ୍ତି
ତାରାତାରିଣୀ ପ୍ରସାଦେ ସୁଖରେ ଅଛନ୍ତି
ଆପଦେ ବିପଦେ ତାରାତାରିଣୀଙ୍କୁ ଗୁହିଁ
ହସ୍ତ ଯୋଡ଼ି ଜଣାଇଲେ ଶାନ୍ତି ବିରାଜଇ । ୧୪୧ ।

ଏହିପରି ଯେଉଁ ଭକ୍ତ ଦୂରେ ବା ନିକଟେ
ଭକ୍ତି ଭରେ ଡ଼ାକେ ତାର ଦୁଃଖ, କଷ୍ଟ ଛୁଟେ
ଶ୍ରୀ ତାରାତାରିଣୀ ସ୍ତବ ଯେହୁ ଭକ୍ତିଭରେ
ଲେଖି ଦାନ କରେ ଶୁଣେ ଅବା ପାଠ କରେ ।୧୪୨।

ମହାପାପ, ମହାବ୍ୟାଧି ହୁଅଇ ମୋଚନ
ନ ଲାଗେ ତାହାକୁ କେବେ ଅକାଳ-ମରଣ
ଭୂତ, ପ୍ରେତ, ଚୌର ଭୟ ଥିଲେ ହେଁ ନରହେ
ବନ୍ଧନ ଯୋଗରୁ ସୁନିଶ୍ଚିତେ ମୁକ୍ତିପାଏ । ୧୪୩ ।

ଦୁର୍ଗୁଣ ବିନାଶି ବୃଦ୍ଧି କରେ ସଦ୍‌ଗୁଣ
ନବଗ୍ରହ ଭୟ ଯାଏ ନରହେ ଦୁଃସ୍ୱପ୍ନ
କଟଇ ବୈଧବ୍ୟ ଦୋଷ ମିଳେ ସର୍ବଶାନ୍ତି
ସାତ ଜନ୍ମ ବନ୍ଧ୍ୟା ନଷ୍ଟେ ହୁଏ ପୁଷ୍ପବତୀ । ୧୪୪ ।

ବିଦ୍ୟାର୍ଥୀ ପଢ଼ିଲେ ବିଦ୍ୟା ହୁଅଇ ଅପାର
କୁମାରୀ ପଢ଼ିଲେ ମିଳେ ଯଥାଯୋଗ୍ୟ ବର

ଏକ ବିଂଶ ଦିନ ଯେହୁ ଦେବୀଙ୍କ ପୀଠରେ
ହବିଷାନ୍ନେ ତିନି ବେଳା ସ୍ତବ ପାଠ କରେ । ୧୪୫ ।

କିବା ତିନି ଦିନ ଯେହୁ ଅଧିଆ ପଡ଼ଇ
ଦେବୀଙ୍କ ପ୍ରସାଦେ ସର୍ବ ସଙ୍କଟ ଘୁଞ୍ଚଇ
ପୁତ୍ର, ପୌତ୍ରାଦି ସହିତ ମହାସୁଖେ ଦିନ
ବିତାଇ ନ ଲଭେ ଯମ ସଦନ ଦର୍ଶନ । ୧୪୬ ।

ଚଇତ୍ର ମାସର ପ୍ରତି ମଙ୍ଗଳବାରରେ
ଯେଉଁ ନାରୀ ତାରତାରିଣୀଙ୍କ ବ୍ରତକରେ
ତା ଗୃହର ସର୍ବବିଧ ମଙ୍ଗଳ ବିଧାନ
ତାରତାରିଣୀ କରନ୍ତି ହୋଇ ହର୍ଷମନ । ୧୪୭ ।

ଶ୍ରୀ ତାରତାରିଣୀଙ୍କର କବଚ ଯେ ହସ୍ତେ
ପିନ୍ଧେ ନିଜ ଅଭିଳାଷ ପୂରଣ ନିମନ୍ତେ
ଅବିଳମ୍ବେ ଅଭିଳାଷ ପୂରଣ ହୁଅଇ
ଯେଣେ ଯାଏ ତେଣେ ନିଶ୍ଚେ ବିଜୟ ଲଭଇ । ୧୪୮ ।

ଜୟ ମା ତାରତାରିଣୀ ଜୟ ଜଗଦ୍ଧାତ୍ରୀ
ବାଳ ସୂର୍ଯ୍ୟ ଜିଣି ଯାର ପ୍ରକାଶଇ ଜ୍ୟୋତି
ଜୟ ମା ତାରତାରିଣୀ ବିପଦ ବାରିଣୀ
ଜୟ ମା ତାରତାରିଣୀ ଶକ୍ତି ପ୍ରଦାୟିନୀ । ୧୪୯ ।

ମାଟି, ସ୍ୱର୍ଣ୍ଣ ବିନେ କୁମ୍ଭକାର, ସ୍ୱର୍ଣ୍ଣକାର
ଗଢ଼ି ନପାରନ୍ତି ଯେହ୍ନେ ଘଟ, ଅଳଙ୍କାର
ସେହିପରି ଶକ୍ତି ବିନେ ସେ କମଳାସନ
ସୃଷ୍ଟି ଗଢ଼ିବାରେ କେବେ ନୁହନ୍ତି ସକ୍ଷମ । ୧୫୦ ।

ଦେବ ଦେବ ମହାଦେବ ସଂହାର କରତା
ଶକ୍ତି ବିନେ ଶବ ସମ ନ ରହେ କ୍ଷମତା
ସୃଷ୍ଟି, ସ୍ଥିତି, ପ୍ରଳୟର ତୁ ଅଧିକାରିଣୀ
ଦେବଗଣ ତୋର ମାୟା ନପାରନ୍ତି ଜାଣି । ୧୫୧ ।

ମୁଁ ଅବା ଜାଣିବ କାହୁଁ ଏ ହୀନ ଜୀବନେ
ଲେଖିଲି ପ୍ରେରଣା ଲଭି ତୋର ଦରଶନେ
ତୁହିମା ଭବତାରଣୀ କରୁଣାର ସିନ୍ଧୁ
ନାହିଁକି ମୋ ସଂସାରେ ମାତ ଏକମାତ୍ର ବନ୍ଧୁ । ୧୫୨ ।

ଏଇ ମାତ୍ର ନିବେଦନ କରୁଅଛି ତୋତେ
ଅନ୍ତେ ଆଶ୍ରୟ ଦେବୁ ତୋର ପଦ ପ୍ରାନ୍ତେ
ପଢ଼ିବା ଶୁଣିବା ଜନେ ସାଯୁଜ୍ୟ ମୁକତି
ଦେବୁ ଯେହ୍ନେ ହୀନ ନିରଞ୍ଜନର ମିନତି । ୧୫୩ ।

—o—

# ଭାଗତାରଣୀ ବା ସଂକଷ୍ଟତାରଣୀ
## ପୂଜାବିଧି

୧ । ପୂଜା ଉପକରଣ—ଚନ୍ଦନ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ ଏ ସମସ୍ତ ପ୍ରଥମେ ଯୋଗାଡ଼ କରିବାକୁ ହେବ ।

୨ । ଗନ୍ଧଦାନ ମନ୍ତ୍ର—

ପରମାନନ୍ଦ ସୌରଭ୍ୟ ପରିପୂର୍ଣ୍ଣ ଦିଗନ୍ତରଂ
ଗୃହାଣ ପରମଂଗନ୍ଧଂ କୃପୟା ପରମେଶ୍ୱରି !
ସଙ୍କଷ୍ଟତାରଣ୍ୟୈ ଗନ୍ଧୋ ନମଃ

୩ । ପୁଷ୍ପ ପ୍ରଦାନ—

ନାନା ବିଧାନି ପୁଷ୍ପାଣି
ନାନା ଗନ୍ଧ ଯୁତାନି ଚ
ନାନା ବର୍ଣ୍ଣାନ୍ୟା ହୃତାନି
ଶୋଭାର୍ଥଂ ପ୍ରତି ଗୃହ୍ୟତାମ୍
ସଙ୍କଷ୍ଟତାରଣ୍ୟୈ ପୁଷ୍ପାଣି ବୌଷଟ୍

୪ । ଧୂପ ପ୍ରଦାନ—

ବନସ୍ପତି ରସୋଦ୍ଭୂତୋ ଗନ୍ଧାଢ଼୍ୟଃ ସୁମନୋହରଃ
ଆଘ୍ରେୟଃ ସର୍ବଦେବାନାଂ ଧୂପୋଽୟଂ ପ୍ରତିଗୃହ୍ୟତାଂ
ସଙ୍କଷ୍ଟତାରଣ୍ୟୈ ଧୂପଃ ସ୍ୱାହା

୫ । ଦୀପ ପ୍ରଦାନ—

ସୁପ୍ରକାଶୋ ମହାଦୀପଃ ସର୍ବତ୍ର ତିମିରାପହଃ
ସବାହ୍ୟାଭ୍ୟାନ୍ତରଂ ଜ୍ୟୋତିଃ ଦୀପୋଽୟଂ ପ୍ରତିଗୃହ୍ୟତାଂ
ସଙ୍କଷ୍ଟତାରଣ୍ୟୈ ଦୀପଃ ସ୍ୱାହା

୬ । ନୈବେଦ୍ୟାର୍ପଣ—

ଜୂଷାଣଦେଖ ନୈବେଦ୍ୟଂ ନାନାସ୍ୱାଦୁ ରସୈର୍ଯୁତଂ
ସାପୂପପାୟସଂ ସର୍ପିଃ ସୀତା ଦୁଗ୍ଧ ସମନ୍ୱିତ
ଝଙ୍କଟଚାରଣ୍ୟୈ ନୈବେଦ୍ୟ ସ୍ୱାହା

୭ । ପୁଷ୍ପାଞ୍ଜଳି ଅର୍ପଣ —

ନାନାସୁଗନ୍ଧ ପୁଷ୍ପାଣି ଯଥା
କାଳୋଦ୍‌ଭବାନିଚ ପୁଷ୍ପାଞ୍ଜଳିଂ ମୟା ଦତ୍ତଂ
ଗୃହାଣ ପରମେଶ୍ୱର !

୮ । ବ୍ରାହ୍ମଣ ପୂଜକ ଅଭାବେ ନିଜେ ବ୍ରତାବଲମ୍ବୀ ପୂଜା ଅର୍ଚ୍ଚନା କରିପାରିବେ ।

୯ । ଅସୁବିଧା ବଶତଃ ଋଷିକୁଲ୍ୟା ନଦୀ ବ୍ୟତି-ରେକ ବ୍ରତାବଲମ୍ବୀ ଅଥବା ପରିବାରର ଯେ କୌଣସି ସଦସ୍ୟ ଅନ୍ୟ ଯେକୌଣସି ନଦୀ ବା ପୁଷ୍କରଣୀ ଘାଟରେ ବିସର୍ଜ୍ଜନ କରିବା ବିଧେୟ ।

୧୦ । ବ୍ରତାବଲମ୍ବୀ ଅସମର୍ଥ ପକ୍ଷେ କେବଳ ଚତୁର୍ଥ ପାଳିରେ ଖିରି, ପିଠା, ଅଟକାଳି ଇତ୍ୟାଦି ନୈବେଦ୍ୟ ଦେବେ । ଅନ୍ୟ ପାଳିରେ ଯଥା-ଶକ୍ତି ପଞ୍ଚୋପଚାରରେ ପୂଜା କରିବେ ।

୧୧ । ବ୍ରତଲମ୍ବୀ ମାନସିକ କରି ବ୍ରତ କରିବେ । ମାନସିକ ପୂର୍ଣ୍ଣ ହେଲେ ଉଦ୍‌ଯାପନ କରିବେ ।

—୦—

# ସଙ୍କଟତାରଣୀ ବ୍ରତ ବା ତାରିତାରିଣୀ ବ୍ରତ

ବଶିଷ୍ଠଙ୍କ ପାଶେ ଦିନେ ଅରୁନ୍ଧତୀ ବସି
ପୁଚ୍ଛନ୍ତି ହେ ମହାମୁନି ତ୍ରିକାଳ ଦର୍ଶି !

ବହୁଦିନୁ ଅଭିଳାଷ ରହିଅଛି ମୋର
ପୁଚ୍ଛିବା ପାଇଁ କଥାଏ ଆହେ ପ୍ରାଣେଶ୍ୱର ।

ବ୍ୟସ୍ତତା ମଧ୍ୟେ ତୁମ୍ଭର' ନଥିଲା ସୁଯୋଗ
ଦଇବରେ ଘଟିଅଛି ଆଜି ପୁଣ୍ୟଯୋଗ ।

ଆତୁର ମୋ ଦୂର କର ଆହେ ପ୍ରାଣଧନ
ପଚାରିବି ଯାହା କହ ନ ହୋଇ ବିମନ ।

ବହୁ ଓଷା, ବ୍ରତ, ଦେବ, ଦେବୀ ଉପାସନା
କରିଲେ ହେଁ ନ ଲଭଇ ମନରେ ସାନ୍ତ୍ୱନା ।

ଆଜି କହ ବ୍ରତ ଅବା ଅଛି ସୁମହତ
କହ ତାହା ମୋ ଅଗ୍ରତେ ଆହେ ଯନ୍ତନାଥ ।

ଅରୁନ୍ଧତୀ ଏହିପରି ପଚାରନ୍ତେ ବସି
ଭାଷନ୍ତି ବଶିଷ୍ଠ ମୁନି ମନ୍ଦ, ମନ୍ଦ ହସି ।

ଶୁଣ ପ୍ରାଣେଶ୍ୱରି ! ତୁମ୍ଭ ସ୍ନେହେ ବାନ୍ଧି ହୋଇ
କହୁଅଛି ବ୍ରତଏକ ନରଖି ଲୁଚାଇ ।

'ସଙ୍କଟ ତାରିଣୀ' ଅଟେ ସେହି ବ୍ରତନାମ
ଘୋର ସଙ୍କଟରୁ ପ୍ରାଣୀ ଲଭନ୍ତି ମୋଚନ ।

ମହାସତୀ ସୀତାଙ୍କର ନେତକୁ ଜନନୀ
ତାରତାରିଣୀ ନାମରେ ସେ ଦୁଇ ଭଗିନୀ ।

ଉତ୍ତରନ୍ତି ପୂଣ୍ୟତୋୟା ଋଷିକୁଲ୍ୟା ତୀରେ
ତାରତାରିଣୀ ନାମକ ପର୍ବତ ଉପରେ ।

ତାରତାରିଣୀ ସେ ମୂର୍ତ୍ତି ସଙ୍କଟ ତାରିଣୀ
ବ୍ରତ ତାହାଙ୍କର କଲେ ସୁଖ ଲଭେ ପ୍ରାଣୀ ।

ବଶିଷ୍ଠଙ୍କ ଠାରୁ ଶୁଣି ଏସନ ବଚନ
ଅରୁନ୍ଧତୀ ମନେ ମନେ ହୋଇଣ ଉଚ୍ଛନ୍ନ ।

ପଚାରନ୍ତି ମହାସତୀ ନକରି ଉଚ୍ଛୁର
କହ କହ ନାଥ ବିଧି, ବିଧାନ ଏହାର ।

ବଦନ୍ତି ବଶିଷ୍ଠ ମୁନି ଶୁଣ ପ୍ରିୟେ ଧିରେ
ଚଇତ୍ର ମାସର ପ୍ରତି ମଙ୍ଗଳବାରରେ ।

ପ୍ରାତଃ କାଳୁ ଶଯ୍ୟା ତ୍ୟାଗ କରି ସେ ରମଣୀ
ମନ୍ଦାର, ଚମ୍ପକ ଆଦି ବହୁ ପୁଷ୍ପ ଆଣି ।

ସ୍ନାନ ନିତ୍ୟକର୍ମ ଶେଷ କରି ସ୍ୱଚ୍ଛମନରେ
ଶ୍ରୀ ତାରତାରିଣୀ ସ୍ତବ ପଢ଼ି ସୁଚିତ୍ତରେ ।

ନିରାହାରେ ରହି ସୂର୍ଯ୍ୟ ହେଲେ ଅସ୍ତମିତ
ପବିତ୍ର ମାନସେ ଆରମ୍ଭିବ ଏହି ବ୍ରତ ।

ତାରତାରିଣୀଙ୍କ ଚିତ୍ରପଟ ଶ୍ରଦ୍ଧାସନେ
ସଂସ୍ଥାପିବ ପଟ୍ଟ ବସ୍ତ୍ର ଉପରେ ଯତନେ ।

ବାମ ପାର୍ଶ୍ୱେ ଅନ୍ୟ ଏକ ପୀଢ଼ିକ ରଖିବ
ଦଶ ଗୁଆ, ଦଶ ମହାବିଦ୍ୟା ନାମେ ଦେବ ।

ଦଶ ମହାବିଦ୍ୟା ନାମେ କରି ସଂସ୍ଥାପନ
ତାରତାରିଣୀ ଗୁଆରେ ବୋଳିବ କୁଂକୁମ ।

ଦଶ ଖିଅ ନାଲ ସୂତା ଦଶ ଗଣ୍ଠି କରି
ରଖିବ ତା ପାଶେ ତାରିଣୀ ସୁମରି ।

ଦୁର୍ଗା, ଉମା, ଶିବା, ଗୌରୀ, କାଳୀ, ହୈମବତୀ
ଚଣ୍ଡିକା, ଅମ୍ବିକା, ସର୍ବମଙ୍ଗଳା, ପାର୍ବତୀ ।

ଏହିପରି ଯଥାକ୍ରମେ ଦଶଗୋଟି ନାମେ
ଦଶଗଣ୍ଠି ପକାଇବ ଚିନ୍ତ ମନେ, ମନେ ।

ଗନ୍ଧ, ପୁଷ୍ପ, ଧୂପ, ଦୀପ ଦେବ ଆନନ୍ଦରେ
ଅକ୍ଷତ ଓ ବରକୋଳି ପତ୍ର ସହିତରେ ।

ମଣ୍ଡାପିଠା, ଅଟକାଳି ନବାତରି ପଣା
ମିଷ୍ଟାନ୍ନରେ ଭୋଗଥାଳୀ କରିବ ଭରଣା ।

ରମ୍ଭା, ନାରିକେଳ ଆଦି ସୁମଧୁର ଫଳ
ଭୋଗଥାଳୀ ସନ୍ନିକଟେ କରି ଏକ ଠୁଳ ।

ନାନାଦି ବାଜଣା, ହୁଳହୁଳି ଶଂଖଧ୍ୱନି
ବଜାଇବ ବନ୍ଧୁ, ସହୋଦର ସଙ୍ଗେ ଘେନି ।

ଜୟମା ତାରିଣୀ ପଡ଼ୁଥିବ ରଡ଼ି
ଭୂତ, ପ୍ରେତ, ପିଶାଚାଦି ପିବେ ସ୍ଥାନ ଛାଡ଼ି ।

ସଙ୍କଟତାରିଣୀ ନାମେ ନଇବେଦ୍ୟ ଦେବ
ବ୍ରାହ୍ମଣ ପୂଜକ ଠାରୁ ଏ ବ୍ରତ ଶୁଣିବ ।

---

ଦଶ ମହାବିଦ୍ୟା = କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା, ମାତଙ୍ଗୀ, କମଳାତ୍ମିକା

ଆରତୀ ଓ ପୁଷ୍ପାଞ୍ଜଳି ଦେଇ ଭକ୍ତି ଭରେ
ଅଭୀଷ୍ଟ ସିଦ୍ଧି ପ୍ରାର୍ଥନା କରିବ ମନରେ ।

ପୂଜା ଶେଷେ ସେହୁ ବ୍ରତ ପିଣ୍ଡ ବାମକରେ
ପ୍ରଣମିବ ଗୁରୁ, ଗୁରୁଜନେ ଶ୍ରଦ୍ଧାଭରେ ।

ପ୍ରତିବେଶୀ ଜନେ କରି ପ୍ରସାଦ ବଣ୍ଟନ
ବ୍ରତାନୁଷ୍ଠ ତଦନ୍ତର କରିବେ ସେବନ ।

ସୁଖେ ନିଦ୍ରା ଯାଇ କାଳରାତ୍ରି କଟାଇବେ
ଏହିପରି ଗୁରୁପାଳି ବ୍ରତ ଆଚରିବେ ।
ପଞ୍ଚମ ପାଳିର ସେହି ମଙ୍ଗଳ ବାରରେ
ତାରତାରିଣୀ ଗୁଆକୁ ରଖି ସ୍ବଗୃହରେ ।
ଅନ୍ୟ ଗୁଆ ସବୁ ପୂଣ୍ୟ ଋଷିକୁଲ୍ୟା ନୀରେ
ବିସର୍ଜିବ ନାଲି ବସ୍ତ୍ରେ ବାନ୍ଧି ଯତନରେ ।
ବିସର୍ଜନ କାଳେ ତାରତାରିଣୀ ସ୍ମରଣ
କଲେ ନ ପଶଇ ଗୃହେ ଅକାଳ ମରଣ ।
ଭାଗ୍ୟବତୀ, ଧନବତୀ ହୋଇ ସେହି ନାରୀ
ବଢାଇବେ ଧନ ପୁତ୍ର,ପୁତ୍ରୀ ସଙ୍ଗେ ଧରି ।
ତାପର ବରଷ ପୁଣି ସେହି ପରକାରେ
ଚୈତ୍ର ମାସ ପ୍ରଥମ ମଙ୍ଗଳ ବାରରେ ।
ତାରତାରିଣୀ ଗୁଆକୁ କାଢ଼ି ଫରୁଆରୁ
ଅନ୍ୟ ନଅଗୋଟି ଗୁଆ ଆଣିବ ବାହାରୁ ।
ବ୍ରତ ଆଚରିବ ପୂର୍ବବିଧି, ବିଧାନରେ
ଧନ, ଜନ, ଗୋପଲକ୍ଷ୍ମୀ ଲଭିବ ଅଚିରେ ।
ବହୁବାର ଲଭି ତାରତାରିଣୀ ପ୍ରେରଣା
ନିରଞ୍ଜନ ରଥ କରେ ଏ ବ୍ରତ ରଚନା । 

ଦକ୍ଷିଣ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର
ବ୍ରହ୍ମପୁର ନଗରୀର ଲୋକପ୍ରିୟ
ପୁରାତନ କଳା ସଂସ୍କୃତି ପୀଠ

# ଜାତୀୟ ସଂଗୀତ କଳା କେନ୍ଦ୍ର

ସ୍ଥାପିତ—୧୯୫୪

ସାହିତ୍ୟ ସୁଧା, ସଙ୍ଗୀତ ସୁଧା, ସାତ୍ତ୍ୱିକ ସୁଧାର
ମଧୁର ସମନ୍ୱୟରେ ମାସିକ କବିତାପାଠୋତ୍ସବ
ସଙ୍ଗୀତ ଆସର ଏବଂ ଆଧ୍ୟାତ୍ମିକ ଚିନ୍ତନର
ଅପୂର୍ବ ସମାବେଶ ଏବଂ
'ଇନ୍ଦିରା ବୈଷୟିକ ପ୍ରତିଷ୍ଠାନ' ମାଧ୍ୟମରେ
ଅକର୍ମୀ ଓ ଅର୍ଦ୍ଧ ଶିକ୍ଷିତା ମହିଳାମାନଙ୍କୁ
ଟେଲରିଂ ଟାଇପ ପ୍ରଭୃତି ତାଲିମ ପ୍ରଦାନ ।

ଶ୍ରୀ ତ୍ରିପୁରାରୀ ସାବତ
ପ୍ରତିଷ୍ଠାତା ସମ୍ପାଦକ

---

ଅଧ୍ୟାପକ ଦେବୀ ପ୍ରସାଦ ସାହୁଙ୍କ ଲିଖିତ
ଛାତ୍ର ଉପଯୋଗୀ ବହି ସମୁହ—

1. High School Essays and Letters
2. Structural New Translation
3. A Hand Book of Grammar
4. ପ୍ରଗତି ପ୍ରବନ୍ଧମାଳା ( ୧ମ ଓ ୨ୟ ଭାଗ)
5. Popular Tense Chart
6. Indian and World History +2
7. ଶିକ୍ଷାତତ୍ତ୍ୱ +2, +3 ଏବଂ C.T.



ଲେଖକ ଶ୍ରୀ ନିରଞ୍ଜନ ରଥ ଭଞ୍ଜଭୂମି ଶ୍ରୀକର ଭଞ୍ଜ ପ୍ରତିଷ୍ଠିତ ଗ୍ରାମ ଶ୍ରୀକରପୁର ଶାସନସ୍ଥ ଧର୍ମପ୍ରାଣ ପିତା ସ୍ୱର୍ଗତ ବିଶ୍ୱନାଥ ରଥ ଏବଂ ମାତା ସୁଧା ଦେବୀଙ୍କ ଔରସରୁ ୧୯୩୫ ସାଲ ଅଗଷ୍ଟ ମାସ, ୫ ତାରିଖ ଅର୍ଥାତ୍ ଶ୍ରାବଣ ମାସ ଶୁକ୍ଳପକ୍ଷ ଷଷ୍ଠୀ ସୋମ-ବାରରେ ଜନ୍ମଲାଭ କରିଅଛନ୍ତି । ଗତ ତା ୩୦-୬-୯୪ ରିଖ ଠାରୁ ସରକାରୀ ଚାକିରୀ ଜୀବନରୁ ଅବ୍ୟାହତି ନେଇ ଅଧୁନା ବିଭିନ୍ନ ଆଧ୍ୟାତ୍ମିକ କାବ୍ୟ, କବିତା ରଚନାରେ ସମସ୍ତ ଅତିବାହିତ କରନ୍ତି ।

## ପ୍ରକାଶିତ ଲେଖାବଳୀ—

୧) କରୁଣାନିଧି ଜଣାଣ ୨) କରୁଣାବାରିଧି ଜଣାଣ ୩) ସୀତା-କାନ୍ତ ଜଣାଣ ୪) ଅଶ୍ୱତ୍ଥାମନ ଚଉତିଶା ୫) ଅନ୍ତର ବେଦନା ୬) *Lyrics of Heart* [ ଅନ୍ତର ବେଦନାର ଇଂରାଜୀ ଅନୁବାଦ ] ୭) ଭକ୍ତ ମିଳନ ୮) ବୀର ହନୁମାନ ଶତକ ୯) ଆଦର୍ଶ ନାରୀ ୧୦) ତ୍ରିଲୋଚନ ଶତକ ୧୧) ଅହଲ୍ୟା ନିସ୍ତାରଣ ୧୨) ସୂକ୍ତ ଚନ୍ଦ୍ରିକା ୧୩) ବୃଦ୍ଧି ସିଦ୍ଧି ମୁକ୍ତି ୧୪) ନିଗମ ଗୀତ ସଙ୍ଗ୍ରହ ୧୫) ବ୍ୟାସଦେବୀ ସ୍ତବ ୧୬) ବିରଞ୍ଚି ନାରାୟଣ ଶତକ ୧୭) ମହାସ୍ୱପ୍ନୀ କୈକେୟୀ ୧୮) ପାପନାଶନ ହରିବାସ ବ୍ରତ ୧୯) ଶ୍ରୀ ଶ୍ରୀ ତାରତାରିଣୀ ୨୦) ଗୁରୁ ଅ-କ୍ଷ ମାଳା

## ଅପ୍ରକାଶିତ ଲେଖାବଳୀ—

୧) ନାରାୟଣ ଶତକ ୨) ବିନାୟକ ଶତକ ୩) ମହାସ୍ୱପ୍ନୀ ଊର୍ମିଳା ୪) ମହାମୃତ୍ୟୁଞ୍ଜୟ ସ୍ତବନ ୫) ଏକପଦ୍ମ ସିଦ୍ଧ ଭୈରବୀ

---

ମୁଦ୍ରଣ : ମୁଦ୍ରାଲିପି, ପାଲୁର ବଙ୍ଗଳା, ବ୍ରହ୍ମପୁର-୧ (ଗଞ୍ଜାମ)